# ଆମ ରୋଗର ରହସ୍ୟ



ଡାକ୍ତର କମଳା ପାତ୍ର

# ଆମ ରୋଗର ରହସ୍ୟ

ଲେଖିକା : ଡାକ୍ତର କମଳା ପାଣ୍ଡ

ଶରୀର ରଚନା ବିଭାଗ

ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ, କଟକ

ପ୍ରକାଶକ : ଶ୍ରୀ ନଳିନୀ କାନ୍ତ ନନ୍ଦ

ଏସ୍‌ବି ପବ୍ଲିକେଶନ୍‌ସ

ବିନୋଦ ବିହାରୀ, କଟକ-୭୫୩୦୦୨

ମୁଦ୍ରଣ : ସୁବ ପ୍ରିଣ୍ଟର୍ସ, କଟକ-୭୫୩୦୧୨

ପ୍ରକାଶନ କାଳ : ୧୯୮୯

ମୂଲ୍ୟ-ଟ ୭·୦୦

## ପଢ଼ିବା ଆଗରୁ ପଦେ ... ...

ରୋଗ ହେଉଛି ମଣିଷର ଚିର ଶତ୍ରୁ । ମଣିଷ ଯେତେ ସୁନ୍ଦର, ସୁସ୍ଥ ଓ ସବଳ ହୋଇଥିଲେ ମଧ୍ୟ ଯେତେବେଳେ ରୋଗରେ ଆକ୍ରାନ୍ତ ହୁଏ, ସେ ଦୁର୍ବଳ ହୋଇପଡ଼େ ଓ ନିଜକୁ ଅସହାୟ ମନେ କରେ । ବିଶେଷତଃ ଶିଶୁମାନେ ହିଁ ଆମ ଦେଶର ଭବିଷ୍ୟତ । ସେମାନଙ୍କର ନିରାପତ୍ତା ଉପରେ ଜାତିର ଭବିଷ୍ୟତ ନିର୍ଭର କରେ । ତେଣୁ ଆମ ଦେଶରେ ଦେଖା ଯାଉଥିବା ସାଧାରଣ ରୋଗ ବିଷୟରେ ପିତାମାତା ତଥା ପିଲାମାନେ ଯଦି ପ୍ରଥମରୁ ସଜାଗ ରୁହନ୍ତି, ତେବେ ଶିଶୁ ମୃତ୍ୟୁହାର ସଂଖ୍ୟା କମିବା ସଙ୍ଗେ ସଙ୍ଗେ ଦେଶ ଉନ୍ନତ ତଥା ସମୃଦ୍ଧଶାଳୀ ହୋଇ ପାରିବ । ତେଣୁ "ଆମ ରୋଗର ରହସ୍ୟ" ପୁସ୍ତକଟିରେ ପିଲମାନଙ୍କ ବୁଝିବା ଭଳି ସହଜ ଓ ସରଳ ଭାଷାରେ ରୋଗ କିପରି ହୁଏ, ରୋଗର ପ୍ରସାର ତଥା ପ୍ରତିଷେଧକ ବ୍ୟବସ୍ଥା ବିଷୟରେ ଲେଖାଯାଇଛି । ଏହି ପୁସ୍ତକଟି ପଢ଼ି ଜନସାଧାରଣ ତଥା ପିଲାମାନେ ଯଦି ବିଭିନ୍ନ ରୋଗ ପ୍ରତି ପ୍ରଥମରୁ ଧ୍ୟାନ ଦିଅନ୍ତି, ତେବେ ରୋଗର ଭୟାବହତା ହ୍ରାସ ପାଇବା ସହିତ ସମସ୍ତେ ନିରୋଗ ଜୀବନ ଯାପନ କରି ପାରିବେ ବୋଲି ଆଶା ଓ ବିଶ୍ୱାସ ।

ଡ଼. କମଳା ପାତ୍ର

# ସୂଚୀପତ୍ର



---*---

ମଣିଷ ଜୀବନରେ ସ୍ୱାସ୍ଥ୍ୟ ଏକ ମୁଖ୍ୟ ସ୍ଥାନର ଅଧିକାରୀ। ସୁତରାଂ ଉତ୍ତମ ସ୍ୱାସ୍ଥ୍ୟ ରକ୍ଷା କରିବା ମଣିଷ ଜୀବନର ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ। କିନ୍ତୁ ସାଧାରଣ ଲୋକେ ସ୍ୱାସ୍ଥ୍ୟ ସମ୍ପର୍କରେ ବିଶେଷ ସଚେତନ ନୁହନ୍ତି। ସ୍ୱାସ୍ଥ୍ୟ କହିଲେ ଠିକ୍ କ'ଣ ବୁଝାଯାଏ,ସେ ବିଷୟରେ ମଧ୍ୟ ଅଧିକାଂଶ ଅନଭିଜ୍ଞ। ସାଧାରଣତଃ ଶରୀରର କାର୍ଯ୍ୟଦକ୍ଷତାକୁ ହିଁ ସ୍ୱାସ୍ଥ୍ୟ କୁହାଯାଏ। କେବଳ ନୀରୋଗ ଅବସ୍ଥାକୁ ସ୍ୱାସ୍ଥ୍ୟ କୁହାଯାଇ ନ ପାରେ। ମନୁଷ୍ୟର ମନ ସହିତ ସ୍ୱାସ୍ଥ୍ୟର ଘନିଷ୍ଠ ସମ୍ପର୍କ ରହିଛି। ସେଥିପାଇଁ ମାନସିକ ଅଶାନ୍ତି ସ୍ୱାସ୍ଥ୍ୟ ଉପରେ ବିଶେଷ ପ୍ରଭାବ ପକାଇଥାଏ। ମାନସିକ ଅଶାନ୍ତି ଫଳରେ ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ଠିକ୍ ଭାବରେ କାର୍ଯ୍ୟ କରିପାରେ ନାହିଁ। ସ୍ୱାସ୍ଥ୍ୟ ନଷ୍ଟ ନ ହେଲା ପର୍ଯ୍ୟନ୍ତ ସାଧାରଣ ଲୋକେ ସ୍ୱାସ୍ଥ୍ୟର ମୂଲ୍ୟ ହୃଦୟଙ୍ଗମ କରି ପାରନ୍ତି ନାହିଁ। ସାଧାରଣତଃ ଶରୀର, ମନ ଓ ସାମାଜିକ ସୁସ୍ଥତାକୁ ସ୍ୱାସ୍ଥ୍ୟ କୁହାଯାଇଥାଏ। ସୁତରାଂ ଉତ୍ତମ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ଆବଶ୍ୟକୀୟ ନିୟମ ଅନୁସରଣ କରିବା ସଙ୍ଗେ ସଙ୍ଗେ ଶରୀର ଓ ମନକୁ କାର୍ଯ୍ୟକ୍ଷମ ଅବସ୍ଥାରେ ରଖିବା ଉଚିତ। ତେଣୁ ପ୍ରାକୃତିକ ପରିବେଶ ମଧ୍ୟରେ ରହି କିପରି ଉତ୍ତମ ସ୍ୱାସ୍ଥ୍ୟ ରକ୍ଷା କରାଯାଇ ପାରିବ; ତାହା ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧୀୟ ଜ୍ଞାନରୁ ମିଳିଥାଏ।

ଶରୀର ହେଉଛି ଗୋଟିଏ ବଡ଼ କାରଖାନା। ଶରୀରକୁ ମଧ୍ୟ ଗୋଟିଏ କଳଘଣ୍ଟା ସହିତ ତୁଳନା କରାଯାଇ ପାରେ। କଳଘଣ୍ଟାରେ ଯେପରି ଅସଂଖ୍ୟ ଯନ୍ତ୍ର ଥାଏ ଶରୀରରେ ମଧ୍ୟ ସେହିପରି ଅସଂଖ୍ୟ ଯନ୍ତ୍ର ରହିଅଛି। ସାମାନ୍ୟ ଗୋଟିଏ କଳଘଣ୍ଟାରେ ଧୂଳିମଳି ଲାଗିଲେ ତାହା ଯେପରି ଅଚଳ ହୋଇଯାଏ, ସେହିପରି ଶରୀର ମଧ୍ୟକୁ ବାହାରର ଧୂଳିମଳି ପଶିଗଲେ ଶରୀରର ବିଶେଷ କ୍ଷତି ଘଟିବା ସଙ୍ଗେ ସଙ୍ଗେ ଏହା ବିଭିନ୍ନ ରୋଗର କାରଣ ମଧ୍ୟ ହୋଇଥାଏ। ସୁତରାଂ ଶରୀରକୁ ସୁସ୍ଥ ଓ ସବଳ ରଖିବାକୁ ହେଲେ ସମସ୍ତଙ୍କର ସ୍ୱାସ୍ଥ୍ୟ ବିଜ୍ଞାନ ସମ୍ପର୍କରେ ଧାରଣା ରହିବା ଉଚିତ।

ଆମ ଚତୁଃପାର୍ଶ୍ୱରେ ଥିବା ବାୟୁମଣ୍ଡଳ ସର୍ବଦା ଧୂଳିମଳିରେ ପୂର୍ଣ୍ଣ ଥାଏ । ପବନ ସହିତ ଆମ ପ୍ରଶ୍ୱାସ ବାୟୁରେ ସେହି ଜୀବାଣୁ ପୂର୍ଣ୍ଣ ଧୂଳିମଳି ଦେହ ଭିତରକୁ ଯାଇଥାଏ । ରକ୍ତରେ ଥିବା ରୋଗ ପ୍ରତି-ରୋଧକ ଶକ୍ତି ଏହି ଜୀବାଣୁମାନଙ୍କ ସହିତ ସଂଘର୍ଷ କରି ଏମାନଙ୍କୁ ମାରି ଦିଅନ୍ତି । ମାତ୍ର ଜୀବାଣୁମାନେ ଯେତେବେଳେ ବଳବାନ ହୋଇଥାନ୍ତି ଏବଂ ସଂଘର୍ଷରେ ମରନ୍ତି ନାହିଁ, ସେତେବେଳେ ସେମାନେ ବିଭିନ୍ନ ପ୍ରକାରର ରୋଗ ସୃଷ୍ଟି କରିଥାନ୍ତି । ଏହିପରି ଶରୀର ନିଜକୁ ଜୀବାଣୁ-ମାନଙ୍କ ହାତରୁ ସର୍ବଦା ବଞ୍ଚାଇ ରଖିବାକୁ ଚେଷ୍ଟା କରିଥାଏ ।

ରୋଗ ସାଧାରଣତଃ ଦୁଇ ପ୍ରକାର । ଯଥା— ସାଧାରଣ ରୋଗ ଓ ସଂକ୍ରାମକ ରୋଗ । ଖାଦ୍ୟପାନର ବ୍ୟତିକ୍ରମ ଘଟିବା, କୌଣସି ପ୍ରକାର ବିଷାକ୍ତ ଜିନିଷ ଦେହ ଭିତରକୁ ଯିବା, ଦେହ ଭିତରେ ବିଭିନ୍ନ ଯନ୍ତ୍ର ନଷ୍ଟ ବା ଅକ୍ଷମ ହୋଇଯିବା ଆଦି କାରଣରୁ ଯେଉଁ ରୋଗ ହୁଏ, ତାହାକୁ ସାଧାରଣ ରୋଗ କୁହାଯାଏ । ଯଥା— ବହୁମୂତ୍ର, କୋଷ୍ଠ-କାଠିନ୍ୟ ଓ ଅଗ୍ନିମାନ୍ଦ୍ୟ ଇତ୍ୟାଦି । ଏହି ରୋଗର କୌଣସି ନିର୍ଦ୍ଦିଷ୍ଟ ବୀଜ ନ ଥାଏ । ମାତ୍ର ଯେଉଁ ରୋଗ ଜଣକ ଦେହରୁ ଅନ୍ୟ ଜଣକ ଦେହକୁ ଡେଏଁ, ତାହାକୁ ସଂକ୍ରାମକ ରୋଗ କୁହାଯାଏ । ହଇଜା, ବସନ୍ତ, ଯକ୍ଷ୍ମା, ପାଳିଜ୍ୱର ଇତ୍ୟାଦି ସଂକ୍ରାମକ ରୋଗର ଅନ୍ତର୍ଭୁକ୍ତ ଏବଂ ଏହାର ନିର୍ଦ୍ଦିଷ୍ଟ ବୀଜ ଥାଏ ।

ଗଛ ମଞ୍ଜି କିମ୍ବା ମାଛ ଅଣ୍ଡା ପରି ସଂକ୍ରାମକ ରୋଗର ବୀଜ ଗୁଡ଼ିକ ଏକ ପ୍ରକାର ଜୀବନ୍ତ ବସ୍ତୁ । ସେମାନେ ଖାଲି ଆଖିରେ ଦେଖା ଯାଆନ୍ତି ନାହିଁ । ସେମାନଙ୍କୁ ଦେଖିବା ପାଇଁ ଅଣୁବୀକ୍ଷଣ ଯନ୍ତ୍ର ଦରକାର । ଏହାକୁ **ଜୀବାଣୁ** କହନ୍ତି । ହଇଜା ଯକ୍ଷ୍ମା, କଣ୍ଠଅଳନ୍ତ ଇତ୍ୟାଦି ରୋଗ ଏହିପରି ଜୀବାଣୁମାନଙ୍କ ଦ୍ୱାରା ହୋଇଥାଏ । ଜୀବାଣୁମାନଙ୍କଠାରୁ ଆହୁରି କ୍ଷୁଦ୍ର, ସୂକ୍ଷ୍ମ ବୀଜାଣୁକୁ **ଅଣୁ ବୀଜାଣୁ** ବା **ଭୂତାଣୁ** କୁହାଯାଏ । ସର୍ଦ୍ଦିଜ୍ୱର, ମିଳିମିଳା, ହାଡ଼ଫୁଟି ଇତ୍ୟାଦି ରୋଗ ଏହି ଭୂତାଣୁ ଦ୍ୱାରା ହୋଇଥାଏ । ଅନେକ ଜୀବାଣୁ ରୋଗବାହୀ କୀଟ ପତଙ୍ଗମାନଙ୍କ ମଧ୍ୟରେ ବଢ଼ି ସାରିଲା ପରେ ଉକ୍ତ କୀଟ ପତଙ୍ଗଙ୍କ ଦଂଶନ ଦ୍ୱାରା ମନୁଷ୍ୟ ଦେହରେ

ପ୍ରବେଶ କରି ରୋଗ ସୃଷ୍ଟି କରନ୍ତି । ପାଳିଜ୍ୱର ଓ ବାତଜ୍ୱର ଇତ୍ୟାଦି ରୋଗ ମାଛି ମଶା ମାଧ୍ୟମରେ ଏହିସବୁ କୀଟାଣୁମାନଙ୍କ ଦ୍ୱାରା ହୋଇଥାଏ । ଏହା ବ୍ୟତୀତ ଆମ ଦେଶରେ ଦେଖା ଯାଉଥିବା କୃମି-ପୋକ ଗୁଡ଼ିକ ଖୁବ୍ ବଡ଼ ଏବଂ ଏହା ଖାଲି ଆଖିରେ ଦେଖାଯାଏ । କୃମିପୋକର ଡ଼ିମ୍ବ ଗୁଡ଼ିକ ରୋଗୀର ଝାଡ଼ାବାଟେ ବାହାରକୁ ଆସି ଖାଦ୍ୟ ଓ ପାଣୀୟ ସହିତ ମିଶି ଅନ୍ୟ ଲୋକ ଦେହ ଭିତରକୁ ଯାଇ ରୋଗ ସୃଷ୍ଟି କରେ । ଦଣିପୋକ, ଆଙ୍କୁଶ କୃମି ଓ କେଞ୍ଚୁଆ ଇତ୍ୟାଦି ଏହି କୃମିପୋକର ଅନ୍ତର୍ଭୁକ୍ତ ।

ରୋଗୀ ସହିତ ମିଳାମିଶା କରିବା, ରୋଗୀକୁ ଛୁଇଁବା କିମ୍ବା ରୋଗୀର କାଶ ଓ ଛିଙ୍କ ମାଧ୍ୟମରେ ବିଭିନ୍ନ ରୋଗ ସୁସ୍ଥ ଲୋକକୁ ପ୍ରତ୍ୟକ୍ଷ ଭାବରେ ଆକ୍ରମଣ କରିଥାଏ । ଏହା ବ୍ୟତୀତ ରୋଗୀର ପ୍ରତ୍ୟକ୍ଷ ସମ୍ପର୍କରେ ନ ଆସି ମଧ୍ୟ ବାୟୁ, ଜଳ ଓ ଅନ୍ୟାନ୍ୟ ଖାଦ୍ୟଦ୍ରବ୍ୟ ମାଧ୍ୟମରେ ସୁସ୍ଥ ଲୋକ ବିଭିନ୍ନ ରୋଗରେ ପରୋକ୍ଷ ଭାବରେ ଆକ୍ରାନ୍ତ ହୋଇଥାନ୍ତି । ଜୀବାଣୁଗୁଡ଼ିକ ସୁସ୍ଥ ଲୋକର ଶ୍ୱାସପଥ, ପରିପାକ ନଳୀ ଏବଂ ଚର୍ମ ଦ୍ୱାରା ଦେହରେ ପ୍ରବେଶ କରି ରୋଗ ଜନ୍ମାଇଥାଏ ।

ତେଣୁ ଆମ ଦେଶରେ ଦେଖା ଯାଉଥିବା ସାଧାରଣ ରୋଗ ଗୁଡ଼ିକ ଦାଉରୁ ରକ୍ଷା ପାଇବାକୁ ହେଲେ, ଏହା କିପରି ପ୍ରସାର ଲାଭ କରେ, ଏହାର ପ୍ରତିଷେଧକ ବ୍ୟବସ୍ଥା ତଥା ଘରୋଇ ଚିକିତ୍ସା ସମ୍ବନ୍ଧରେ ଯଦି ସର୍ବସାଧାରଣ ଜାଣି ପାରନ୍ତି ଏବଂ ରୋଗ ଆରମ୍ଭରୁ ଏଥିପ୍ରତି ସଚେତନ ହୁଅନ୍ତି ତେବେ ଏହା ବହୁତ ପରିମାଣରେ ହ୍ରାସ ପାଇବ । ଏହାଦ୍ୱାରା ଜନସାଧାରଣଙ୍କ ସ୍ୱାସ୍ଥ୍ୟର ଉନ୍ନତି ହେବା ସହିତ ଅକାଳ ମୃତ୍ୟୁହାର ମଧ୍ୟ କମିଯିବ । ତେଣୁ ସମସ୍ତଙ୍କର ବିଭିନ୍ନ ରୋଗ ସମ୍ବନ୍ଧରେ ଅଳ୍ପ ବହୁତ ଜାଣିବା ଉଚିତ । ଏହାଦ୍ୱାରା ଦେଶ ତଥା ଜାତିର ଉନ୍ନତି ହେବା ସଙ୍ଗେ ସଙ୍ଗେ ଜୀବନର ମାନ ମଧ୍ୟ ବୃଦ୍ଧି ଲାଭ କରିବ ।

*

# ସର୍ଦ୍ଦି ଜ୍ୱର ବା ଇନ୍‌ଫ୍ଲୁଏଞ୍ଜା

ଏହା ଏକ ସଂକ୍ରାମକ ରୋଗ । ଏହି ରୋଗ ଅନେକ ଗୁଡ଼ିଏ ଭୂତାଣୁ ଦ୍ୱାରା ବ୍ୟାପିଥାଏ । ଏହା ପୃଥିବୀର ସବୁ ଦେଶରେ ଦେଖାଯାଏ ଏବଂ ଏକ ସମୟରେ ବହୁତ ଲୋକଙ୍କୁ ଆକ୍ରମଣ କରିଥାଏ । ଏହି ରୋଗ ଛୋଟ ପିଲାଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ସବୁ ବୟସର ଲୋକଙ୍କୁ ଆକ୍ରମଣ କରିଥାଏ । ଏହି ରୋଗ ଭାରତ ବର୍ଷରେ ବହୁଳ ଭାବରେ ଦେଖାଯାଏ । ଗ୍ରୀଷ୍ମ ଋତୁ ବ୍ୟତୀତ ଶୀତ ଓ ବସନ୍ତ ଋତୁ ଆରମ୍ଭରେ ମଧ୍ୟ ଏହି ରୋଗ ଦେଖାଦିଏ । ରୋଗୀର ଗଳା ଓ ନାକରୁ ବାହାରୁଥିବା ଖଂକାର, ସିଂଘାଣି ଓ ଛିଙ୍କ ଦ୍ୱାରା ଏହି ଜୀବାଣୁ ଗୁଡ଼ିକ ବାୟୁମଣ୍ଡଳରେ ମିଶି ରହିଥାଏ । ରୋଗୀ ବ୍ୟବହାର କରୁଥିବା ରୁମାଲ୍, ତଉଲିଆ ପ୍ରଭୃତି ଯଦି ସୁସ୍ଥ ଲୋକ ବ୍ୟବହାର କରେ ତେବେ ସେ ଏହି ରୋଗ ଦ୍ୱାରା ସେ ଆକ୍ରାନ୍ତ ହୋଇଥାଏ ।

ଏହି ରୋଗ ହେଲେ ଦେହ ହାତ ଯୋଡ଼ା ବିନ୍ଧା ହୋଇ ଜ୍ୱର ହୁଏ । ନାକରୁ ପାଣି ପରି ସର୍ଦ୍ଦି ବାହାରେ । ମୁଣ୍ଡ ବିନ୍ଧେ । ରୋଗୀକୁ କାମ କରିବାକୁ ଇଚ୍ଛା ହୁଏ ନାହିଁ କି କିଛି ଖାଇବାକୁ ଇଚ୍ଛା ହୁଏ ନାହିଁ । ଜ୍ୱର ବେଳେବେଳେ ୧୦୩ ଡ଼ିଗ୍ରୀ କିମ୍ବା ୧୦୪ଡ଼ିଗ୍ରୀ ବଢ଼ିଯାଏ । ଏହି ଜ୍ୱର ସାଧାରଣତଃ ସାତ ଆଠ ଦିନ ପର୍ଯ୍ୟନ୍ତ ଲାଗି ରହିଥାଏ ।

ଏହି ରୋଗରୁ ରକ୍ଷା ପାଇବା ପାଇଁ ଇନ୍‌ଫ୍ଲୁଏଞ୍ଜା ଟୀକା ନେବା ଏକାନ୍ତ ଆବଶ୍ୟକ । ଏହି ଟୀକା, ରୋଗଦେଖା ଦେବାର ସପ୍ତାହକ ପୂର୍ବରୁ କିମ୍ବା ଯେଉଁ ଋତୁରେ ଏହା ବେଶୀ ଦେଖାଯାଏ, ତାହାର ଦୁଇ ତିନି ମାସ ଆଗରୁ ନେବା ଦରକାର । ମାତ୍ର ଏହା ସବୁ ସମୟରେ ସମ୍ଭବ ହେଉନଥିବାରୁ ଏହି ଟୀକା ରୋଗର ପ୍ରସାରକୁ କମାଇବାରେ ବିଶେଷ ସହାୟକ ହୋଇ ନଥାଏ ।

**ପ୍ରତିଷେଧକ ବ୍ୟବସ୍ଥା :**

ରୋଗୀକୁ ଗୋଟିଏ ଅଲଗା ଘରେ ରଖିବା ଉଚିତ । ବେଶୀ ଲୋକ ସେହି ଘର ଭିତରକୁ ଯିବା କିମ୍ବା ରୋଗୀ ସହିତ ମିଳାମିଶା

କରିବା ଉଚିତ ନୁହେଁ । ଦିନକୁ ୨।୩ ଥର ଗଳାକୁ ଉଷୁମ ପାଣିରେ ସଫା କରିବା ଦରକାର । ଏହି ରୋଗର ଉପଯୁକ୍ତ ଔଷଧ ନଥିଲେ ମଧ୍ୟ ରୋଗୀର ଛାତିରେ କଫ ଜମା ହେଲେ ଡାକ୍ତରଙ୍କ ପରାମର୍ଶ ଅନୁସାରେ ଔଷଧ ଖାଇବା ଉଚିତ ।

*

# କଣ୍ଠ ଅଳଜି ବା ଡିପଥେରିଆ

କଣ୍ଠ ଅଳଜି ଗୋଟାଏ ମାରାତ୍ମକ ସଂକ୍ରାମକ ରୋଗ । ଏହା ଏକ ପ୍ରକାର ଜୀବାଣୁ ଦ୍ୱାରା ହୋଇଥାଏ । ଏହା ପୃଥିବୀର ସବୁ ସ୍ଥାନରେ ଦେଖାଯାଏ । ଏକ ସମୟରେ ଏହି ରୋଗ ଦ୍ୱାରା ବହୁତ ପିଲା ଆକ୍ରାନ୍ତ ହୋଇଥାନ୍ତି ଏବଂ ମୃତ୍ୟୁ ମୁଖରେ ପଡ଼ନ୍ତି । ସାଧାରଣତଃ ଏକ ବର୍ଷ ବୟସରୁ ନଅ ବର୍ଷ ବୟସର ପିଲାମାନେ ଏହି ରୋଗ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି । ଏହି ରୋଗ ବର୍ଷର ସବୁ ଋତୁରେ ଦେଖାଯାଏ । ଏହି ରୋଗର ଜୀବାଣୁ ଦୂଷିତ ବାୟୁ ମଣ୍ଡଳ, ରୋଗୀର ଛେପ, ଖଙ୍କାର, ଛିଙ୍କ ପ୍ରଭୃତି ମାଧ୍ୟମରେ ସୁସ୍ଥଲୋକର ଶ୍ୱାସପ୍ରଶ୍ୱାସରେ ପ୍ରବେଶ କରିଥାଏ । ଜୀବାଣୁ ପ୍ରବେଶ କରିବାର ଦୁଇ ଦିନରୁ ପାଞ୍ଚଦିନ ମଧ୍ୟରେ ସୁସ୍ଥ ଲୋକ ଏହି ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଏହି ରୋଗ ଫଳରେ ଗଳା ଭିତରୁ ଏକପ୍ରକାର ଖଣ୍ଡାଳିଆ ଦୁର୍ଗନ୍ଧ ବାହାରେ । ଶ୍ୱାସ ପଥ ମୋଟା:ଳିଆ ହୋଇଯିବାରୁ ଶ୍ୱାସପ୍ରଶ୍ୱାସ ନେବାରେ କଷ୍ଟ ହୁଏ । ବେଳେ ବେଳେ ଶ୍ୱାସ ପଥ ବନ୍ଦ ହୋଇ ରୋଗୀର ମୃତ୍ୟୁର କାରଣ ହୋଇଥାଏ ।

ଶିଶୁମାନଙ୍କୁ ଏହି ରୋଗରୁ ରକ୍ଷା କରିବା ପାଇଁ ଏକପ୍ରକାର ଇଞ୍ଜେକ୍‌ସନ ଦିଆଯାଏ । ଏହି ଇଞ୍ଜେକ୍‌ସନ ଦ୍ୱାରା ଲହରିକାଶ ତଥା ଧନୁଷ୍ଟଙ୍କାର ରୋଗରୁ ମଧ୍ୟ ରକ୍ଷା ମିଳିଥାଏ । ଏହା ଡ଼.ପି. ଟି. ଇଞ୍ଜେକ୍‌ସନ ନାମରେ ପରିଚିତ । ସାଧାରଣତଃ ଶିଶୁ ଜନ୍ମ ହେବାର ୩ ମାସ ପରେ ଏକମାସ ବ୍ୟବଧାନରେ ତିନୋଟି ମାତ୍ରାରେ ଏହି ଇଞ୍ଜେକ୍‌ସନ ଦିଆ ଯାଇଥାଏ ।

ଶିଶୁ ଜନ୍ମ ହେବାର ଏକ ବର୍ଷ ପରେ ଥରେ ଏବଂ ୫ ବର୍ଷ ବୟସରେ ଆଉଥରେ ଦିଆଯାଏ । ପିଲାର ଥଣ୍ଡା କାଶ ତଥା ଅନ୍ୟାନ୍ୟ କାରଣରୁ ଦେହ ଖରାପ ଥିଲାବେଳେ ଏହି ଇଞ୍ଜେକ୍ସନ ଦେବା ଉଚିତ ନୁହେଁ । ପିଲାଙ୍କୁ ଏହି ଇଞ୍ଜେକ୍ସନ ଦେବା ପରେ ସାମାନ୍ୟ ଜ୍ୱର ହେଲେ ମଧ୍ୟ ବିଶେଷ ଅସୁବିଧା ହୋଇ ନଥାଏ ।

## ପ୍ରତିଷେଧକ ବ୍ୟବସ୍ଥା :

କୌଣସି ପରିବାରରେ ପିଲାଟିଏ ଡିପ୍‌ଥେରିଆ ରୋଗରେ ଆକ୍ରାନ୍ତ ହେବାର ଜଣା ପଡ଼ିବା ମାତ୍ରେ ଉକ୍ତ ପିଲା ତଥା ପରିବାରର ଅନ୍ୟ ପିଲାମାନଙ୍କର ଗଳା ଓ ନାକ ଭିତରୁ ବାହାରୁଥିବା ରସକୁ ପରୀକ୍ଷା କରି ଏହି ରୋଗର ଜୀବାଣୁ ଅଛନ୍ତି କି ନାହିଁ ଜାଣିବା ଦରକାର । ଏହି ରୋଗରେ ଆକ୍ରାନ୍ତ ପିଲାକୁ ମୁକ୍ତ ବାୟୁ ତଥା ସୂର୍ଯ୍ୟାଲୋକ ପଡ଼ୁଥିବା ଘରେ ଅଲଗା ରଖିବା ଉଚିତ । ରୋଗୀ ରହୁଥିବା ଘରଟିକୁ ବିଶୋଧକ ପାଣି ଦ୍ୱାରା ଧୋଇଦେଲେ ଡିପ୍‌ଥେରିଆ ଜୀବାଣୁ ନଷ୍ଟ ହୋଇଯାଏ । ଏହା ବ୍ୟତୀତ ରୋଗୀର ଅନ୍ୟାନ୍ୟ ବ୍ୟବହୃତ ଜିନିଷ ପତ୍ର ଓ ବିଛଣା ଆଦିକୁ ଗରମ ପାଣିରେ ସିଝାଇ ସଫା କରିବା ଦରକାର । ଡାକ୍ତରଙ୍କ ପରାମର୍ଶ ଅନୁସାରେ ଯଥାଶୀଘ୍ର ଚିକିତ୍ସାର ବନ୍ଦୋବସ୍ତ କରିବା ବିଧେୟ ।

*

# ଲହରିକାଶ ବା ହୁପିଙ୍ଗ୍ କାଶ

ଏହା ଏକ ମାରାତ୍ମକ ସଂକ୍ରାମକ ରୋଗ । ଏହା ମଧ୍ୟ ଏକ ପ୍ରକାର ଜୀବାଣୁ ଦ୍ୱାରା ହୋଇଥାଏ । ଏହିରୋଗ ପ୍ରଥମେ ଫୁସ୍‌ଫୁସ୍‌କୁ ଆକ୍ରମଣ କରେ । ପରେ ପରେ ଏହା ଥଣ୍ଡା କାଶରେ ପରିଣତ ହୁଏ । ଚୀନ୍ ଲୋକମାନେ ଏହାକୁ 'ଶହେ ଦିନର କାଶ' ବୋଲି କହନ୍ତି । ସାଧାରଣତଃ କାଶ ଶେଷରେ ଶ୍ୱାସନଳୀ ମଧ୍ୟରୁ ଏକ ପ୍ରକାର ଶବ୍ଦ ବାହାରୁ ଥିବାର ଶୁଣାଯାଏ । ଏହି ଶବ୍ଦକୁ 'ହୁପ୍' କୁହାଯାଏ । ଏହିରୋଗ ପୃଥିବୀର ସବୁ

ଦେଶରେ ପ୍ରାୟ ଦେଖା ଦେଇଥାଏ । ଏହି ରୋଗ ବସନ୍ତ ଋତୁରେ ବେଶୀ ପରିମାଣରେ ଦେଖାଯାଏ ।

ସାଧାରଣତଃ ପିଲାମାନଙ୍କଠାରେ ଏହି ରୋଗ ଦେଖାଯାଏ । ୨ ବର୍ଷରୁ ୧୦ ବର୍ଷ ବୟସର ପିଲାଙ୍କୁ ଏହି ରୋଗ ଆକ୍ରମଣ କରୁଥିଲେ ମଧ୍ୟ ପାଞ୍ଚ ବର୍ଷରୁ କମ୍ ବୟସର ପିଲାମାନଙ୍କ ପାଖରେ ଏହା ବିଶେଷ ଭାବରେ ଦେଖାଯାଏ । ରୋଗୀର କାଶ, ଶ୍ଳେଷ୍ମ, ଖଙ୍କାର ଇତ୍ୟାଦି ମାଧ୍ୟମରେ ଏହି ରୋଗ ସୁସ୍ଥ ପିଲାଙ୍କୁ ଆକ୍ରମଣ କରିଥାଏ । ରୋଗୀ ବ୍ୟବହାର କରୁଥିବା ରୁମାଲ ଓ ତଉଲିଆ ଆଦି ଦ୍ଵାରା ମଧ୍ୟ ଏହା ସଂକ୍ରମିତ ହୋଇଥାଏ । ଅଧି-କାଂଶ ପିଲା ତାଙ୍କର ସ୍କୁଲ ସାଙ୍ଗ ଓ ଖେଳ ସାଙ୍ଗ ସାଥିମାନଙ୍କ ଠାରୁ ଏହି ରୋଗର ଜୀବାଣୁ ଆଣିଥାନ୍ତି । ଏହିରୋଗର ଜୀବାଣୁ ଦେହଭିତରକୁ ପ୍ରବେଶ କରିବାର ପ୍ରାୟ ଏକ ସପ୍ତାହରୁ ତିନି ସପ୍ତାହ ମଧ୍ୟରେ ରୋଗର ଲକ୍ଷଣ ପ୍ରକାଶ ପାଇଥାଏ । ରୋଗର ପ୍ରଥମ ଅବସ୍ଥାରେ ଥଣ୍ଡା ଓ ଜ୍ଵର ହୁଏ । ଏହି ଅବସ୍ଥା ସାଧାରଣତଃ ଏକ ସପ୍ତାହ ପର୍ଯ୍ୟନ୍ତ ରହିଥାଏ । ତାପରେ କାଶର ପରିମାଣ ବଢ଼ିଯାଏ । ଏହି କାଶ ଦୀର୍ଘ ଦିନ ପର୍ଯ୍ୟନ୍ତ ଲାଗି ରହି-ଥାଏ । ପିଲା ନିଶ୍ୱାସ, ପ୍ରଶ୍ୱାସ ନେବାରେ ଖୁବ୍ କଷ୍ଟ ଅନୁଭବ କରେ । କାଶ ଶେଷରେ ଶ୍ୱାସ ନଳୀ ଭିତରୁ ଏକ ପ୍ରକାର ଶବ୍ଦ ବାହାରେ । ଏହି ଅବସ୍ଥାରେ ପିଲା ବହୁତ କ୍ଳାନ୍ତ ହୋଇ ପଡ଼େ । ମୁହଁ ନୀଳ ପଡ଼ିଯାଏ । ଆଖି ବଡ଼ ବଡ଼ ଦେଖାଯାଏ । ମୁହଁରେ ଝାଳ ବିନ୍ଦୁ ଦେଖାଯାଏ । ସମୟ ସମୟରେ ପିଲା କାଶି କାଶି ବାନ୍ତି କରିପକାଏ । ଖାଇବାପରେ କାଶ ହେଲେ ବାନ୍ତି ବିଶେଷ ଭାବରେ ଦେଖାଯାଏ । ଏହିପରି ଅବସ୍ଥା ପ୍ରାୟ ଦୁଇ, ତିନି ସପ୍ତାହ ପର୍ଯ୍ୟନ୍ତ ଲାଗିରହେ । ତାପରେ କାଶର ପରିମାଣ କମିଯାଏ । କିନ୍ତୁ ବେଳେ ବେଳେ କାଶ ଏପରି ଭୟଙ୍କର ହୁଏ ଯେ ପିଲାର ନାକ ଓ ପାଟିରୁ ରକ୍ତ ବାହାରେ । ଆଖିର ଧଳା ଡୋଳା ଭିତରେ ରକ୍ତ ଜମାଟ ବାନ୍ଧିରହିଥିବାର ଦେଖାଯାଏ । ଏହିପରି ଅବସ୍ଥାରେ କିଛି ଖାଇବାକୁ ଭଲ ଲାଗେ ନାହିଁ । ଫଳରେ ରୋଗୀ ଆସ୍ତେ ଆସ୍ତେ ଦୁର୍ବଳ ହୋଇଯାଏ । ଏହିରୋଗ ଥରେ ହେଲେ ଦ୍ୱିତୀୟ ଥର ହେବାର ସମ୍ଭାବନା ନଥାଏ ।

ବର୍ତ୍ତମାନ ଆମଦେଶରେ ଏହି ରୋଗରୁ ରକ୍ଷାପାଇବା ପାଇଁ ଏକପ୍ରକାର ଟୀକା ବାହାରିଛି । ଏହି ଟୀକାକୁ ଟ୍ରିପିଲ୍ ଏଣ୍ଟିଜେନ୍ କୁହାଯାଏ । ଏହି ଟିକା କଣ୍ଠ ଅଳନ୍ତ ଟୀକାପରି ଶିଶୁ ଜନ୍ମ ହେବାର ବିଭିନ୍ନ ସମୟରେ ଦିଆଯାଇ ରୋଗକୁ ନିୟନ୍ତ୍ରଣ କରାଯାଇଥାଏ ।

**ପ୍ରତିଷେଧକ ବ୍ୟବସ୍ଥା :**

ଆଲୋକ ପଡ଼ୁଥିବା ଏବଂ ପବନ ଯିବା ଆସିବାର ସୁବିଧା ଥିବା ଘରେ ରୋଗୀକୁ ଏକୁଟିଆ ରଖିବା ଉଚିତ । ସେହି ଘର ଭିତରକୁ ବେଶୀ ଲୋକ ଯିବା ଆସିବା କରିବା ଉଚିତ ନୁହେଁ । ରୋଗୀକୁ ଥଣ୍ଡା ନ ଲାଗିବା ପାଇଁ ଗରମ ପୋଷାକ ପିନ୍ଧିବାକୁ ଦିଆଯିବା ଉଚିତ । ରୋଗୀର ଛେପ, ଖଙ୍କାର ଓ ସିଂଘାଣି ଗୋଟିଏ ପାତ୍ରରେ ରଖି ପରେ ଏହାକୁ ନିଆଁରେ ପୋଡ଼ି ଦେବା ଉଚିତ । କାଶ କମିବା ପରିବର୍ତ୍ତେ କାଶ ବଢ଼ିବାକୁ ଲାଗିଲେ, ଡ଼ାକ୍ତରଙ୍କ ପରାମର୍ଶ ନେବା ଉଚିତ ।

*

# ହାଡ଼ଫୁଟି ବା ପାଣି ବସନ୍ତ

ଏହା ଏକ ଉଆଁ ରୋଗ । ଏକ ପ୍ରକାର ଅଣୁ ଜୀବାଣୁ ଦ୍ୱାରା ଏହି ରୋଗର ସୃଷ୍ଟି ହୋଇଥାଏ । ଏହା ଆମ ଦେଶରେ ଏକ ସାଧାରଣ ରୋଗ ଭାବରେ ଦେଖାଯାଏ ।

ହାଡ଼ଫୁଟି ସାଧାରଣତଃ ଦଶବର୍ଷରୁ କମ୍ ବୟସର ପିଲାଙ୍କୁ ଆକ୍ରମଣ କରିଥାଏ । କିନ୍ତୁ ଏହି ରୋଗର କୌଣସି ନିର୍ଦ୍ଦିଷ୍ଟ ବୟସ ସୀମା ନାହିଁ । ଆମ ଦେଶରେ ବର୍ଷର ପ୍ରଥମ ଛଅମାସ ମଧ୍ୟରେ ଏହି ରୋଗର ପ୍ରାଦୁର୍ଭାବ ବିଶେଷ ଭାବରେ ଦେଖାଯାଏ । ସାଧାରଣତଃ ରୋଗୀ ସଙ୍ଗେ ମିଳାମିଶା ଏବଂ ତାର ଲୁଗାପଟା, ବାସନ କୁସନ, ବିଛଣା-ପତ୍ର ଆଦି ବ୍ୟବହାର କଲେ ଏହି ରୋଗ ସୁସ୍ଥ ଲୋକକୁ ଆକ୍ରମଣ

କରିଥାଏ । ଏହାଛଡ଼ା ହାଡ଼ଫୁଟି ଘା'ର ଶୁଖିଲା ବକଲା ଓ ହାତ ଗୁଣ୍ଡ ହୋଇ ପବନରେ ମିଶି ରହିଥାଏ । ସେହି ଜୀବାଣୁ ପୂର୍ଣ୍ଣ ଗୁଣ୍ଡ ଦେହରେ ଲାଗିଲେ କିମ୍ବା ପ୍ରଶ୍ୱାସ ବାଟେ ଦେହ ଭିତରକୁ ପ୍ରବେଶ କଲେ ରୋଗ ଜନ୍ମାଏ । ସାଧାରଣତଃ ସୁସ୍ଥ ଲୋକର ଦେହ ଭିତରକୁ ଜୀବାଣୁ ପ୍ରବେଶ କରିବାର ସାତ ଦିନରୁ ଏକୋଇଶ ଦିନ ଭିତରେ ଏହି ରୋଗର ଲକ୍ଷଣ ପ୍ରକାଶ ପାଇଥାଏ ।



ହାଡ଼ଫୁଟି ବା ପାଣି ବସନ୍ତ ରୋଗୀ

ଏହି ରୋଗ ଆରମ୍ଭ ହେଲେ ପ୍ରଥମେ ମୁଣ୍ଡ ବିନ୍ଧେ । ଗୋଡ଼ହାତ ଚୋଳା ବିନ୍ଧା କରେ । ସାମାନ୍ୟ ଜ୍ୱର ହୁଏ । ଖାଇବାକୁ ଇଚ୍ଛାହୁଏ ନାହିଁ । ଏହିପରି ଅବସ୍ଥା ଦିନେ କିମ୍ବା ଦୁଇଦିନ ପର୍ଯ୍ୟନ୍ତ ଲାଗିରହେ । ତୃତୀୟ ଦିନ ବେଳକୁ ଦେହର ସବୁଆଡ଼େ ମଶା କାମୁଡ଼ା ଦାଗ ପରି ଦାଗ ଦେଖାଯାଏ । ବିଶେଷ କରି ଏହା ସର୍ବପ୍ରଥମେ ଛାତି, ପିଠି, ପେଟ, ପ୍ରଭୃତି ଦେହର ମଧ୍ୟ ଭାଗରେ ଦେଖାଯାଏ । ପରେ ପରେ ଏହା ହାତ ଗୋଡ଼ ପ୍ରଭୃତିରେ ଦେଖାଯାଇଥାଏ । ଏହି ନାଲି ଦାଗ ଗୁଡ଼ିକ ବହୁତ ଶୀଘ୍ର ଫୋଟକାରେ ପରିଣତ ହୋଇ ଜଳ ଜଳ ଦେଖାଯାଏ । ଦୁଇତିନି ଦିନ ଭିତରେ ଏହି ଫୋଟକା ଗୁଡ଼ିକ ଭିତରେ ପୂଜଭର୍ତ୍ତି ହୋଇଯାଏ ଏବଂ ତାହା ବିବର୍ଣ୍ଣଆ ଦେଖାଯାଏ । ଏହାର ଦିନେ କିମ୍ବା ଦୁଇଦିନ ପରେ ଏହି ପୂଜ ଜମାଟ ବାନ୍ଧି ବକଲ ସୃଷ୍ଟି କରେ ଏବଂ ଚାରି କିମ୍ବା ଛଅ ଦିନପରେ ବକଲା ଗୁଡ଼ିକ ଶୁଖି ଝଡ଼ିବାକୁ ଆରମ୍ଭ କରେ । ବକଲା ଝଡ଼ିପଡ଼ିବା ଜାଗାରେ ସାମାନ୍ୟ ଦାଗ ଦେଖାଯାଏ । ଅନେକ ସମୟରେ ହାଡ଼ଫୁଟି

ଏକ ସମୟରେ ଦେହର ସବୁଆଡ଼େ ନ ବାହାରି ଦୁଇ ଗୁଚ୍ଛିଦନ ବ୍ୟବଧାନରେ ସାମାନ୍ୟ ପରିମାଣରେ ବାହାରିଥାଏ । ବାହାରିବା ଆଗରୁ ସାମାନ୍ୟ ଜ୍ୱର ହୁଏ । ଏହି ରୋଗରେ ଏକ ସମୟରେ ବହୁତ ଲୋକ ଆକ୍ରାନ୍ତ ହେଲେ ମଧ୍ୟ ମୃତ୍ୟୁହାର ବହୁତ କମ୍ । ସମୟ ସମୟରେ ଏହି ରୋଗର ଭୂତାଣୁ ଫୁସ୍‌ଫୁସ୍‌କୁ ଆକ୍ରାନ୍ତ କରି ନମୋନିଆ ଭଳି ରୋଗ ଜନ୍ମାଇଥାଏ । ମା'ର ଗର୍ଭାବସ୍ଥାରେ ଯଦି ହାଡ଼ଫୁଟି ହୁଏ, ତେବେ ପିଲାର ଶାରୀରିକ ଗଠନରେ ପରିବର୍ତ୍ତନ ହେବାର ସମ୍ଭାବନା ରହିଥାଏ ।

**ପ୍ରତିଷେଧକ ବ୍ୟବସ୍ଥା :**

ଆଲୁଅ ଓ ପବନ ଯିବା ଆସିବା କରୁଥିବା ପରିଷ୍କାର ଘରେ ରୋଗୀକୁ ଏକୁଟିଆ ରଖିବା ଉଚିତ । ରୋଗୀ ରହୁଥିବା ଘର ଭିତରକୁ ବେଶୀ ଲୋକ ଯିବା ଆସିବା କରିବା କିମ୍ବା ତା ସହିତ କଥାବାର୍ତ୍ତା କରିବା ଉଚିତ ନୁହେଁ । ରୋଗୀର ଆସବାବପତ୍ର ଅନ୍ୟ କେହି ବ୍ୟବହାର କରିବା ଅନୁଚିତ । ରୋଗୀକୁ ସଫା ନରମ ବିଛଣାରେ ଶୁଆଇବା ସଙ୍ଗେ ସଙ୍ଗେ ରୋଗୀର ଦେହ ତଥା ବିଛଣାରେ ଜୀବାଣୁ ନାଶକ ପାଉଡ଼ର ପକାଇବା ଭଲ । ସାଧାରଣତଃ କଦଳୀପତ୍ର ବିଛଣାରେ ପକାଇ ସେହି ବିଛଣା ଉପରେ ରୋଗୀକୁ ଶୁଆଇବା ଦରକାର । ରୋଗୀର ଦେହରେ ଥିବା ଘା' ଉପରେ ଯେପରି ମାଛି ନ ବସନ୍ତି ସେଥିପାଇଁ ରୋଗୀକୁ ମଶାରି ଭିତରେ ଶୁଆଇବା ଉଚିତ । ରୋଗୀର ଛେପ, ଖଙ୍କାର ତଥା ଶୁଖିଲା ଘା'ରୁ ଛାଡ଼ୁଥିବା ବକଲା ଗୁଡ଼ିକୁ ଏଣେତେଣେ ନ ପକାଇ ବିଶୋଧକ ପୂର୍ଣ୍ଣ ପାତ୍ରରେ ରଖି ପୋଡ଼ିଦେବା ଉଚିତ । ରୋଗୀର ଦେହରୁ ସବୁ ବକଲା ଓ କାତି ନ ଛାଡ଼ିଲା ପର୍ଯ୍ୟନ୍ତ ତାହାକୁ ବାହାରକୁ ବୁଲିବାକୁ ଦିଆଯିବା ଉଚିତ ନୁହେଁ । ଦେହରେ ଥିବା ଦାଗ ଗୁଡ଼ିକ ସହଜରେ ଲିଭିଯିବା ପାଇଁ ଆମ ଦେଶରେ ଅନେକେ ପଇଡ଼ପାଣି ବ୍ୟବହାର କରିଥାନ୍ତି ଏବଂ ଏଥିରେ ମଧ୍ୟ ସୁଫଳ ମିଳିଥାଏ । ଏହି ରୋଗର ଚିକିତ୍ସା ପାଇଁ କୌଣସି ନିର୍ଦ୍ଦିଷ୍ଟ ଔଷଧ ନ ଥିଲେ ମଧ୍ୟ ତରଳ ଝାଡ଼ା କିମ୍ବା କାଶକଫ ବହୁତ ଦିନ ପର୍ଯ୍ୟନ୍ତ ଲାଗିରହିଥିଲେ ଡାକ୍ତରଙ୍କ ପରାମର୍ଶ ଅନୁସାରେ ଚିକିତ୍ସା କରିବା ଉଚିତ ।

*

# ମିଳମିଳା

ମିଳମିଳା ହେଉଛି ପିଲାଙ୍କ ରୋଗ । ଏକ ପ୍ରକାର ଅତି ସୂକ୍ଷ୍ମ ଜୀବାଣୁ ଏହି ରୋଗର କାରଣ । ଏହି ରୋଗ ସାଧାରଣତଃ ପୃଥିବୀର ସବୁ ଦେଶରେ ଦେଖାଯାଏ । ଭାରତବର୍ଷରେ ଶୀତ ଓ ବସନ୍ତ ଋତୁରେ ଏହି ରୋଗ ବିଶେଷ ଭାବରେ ଦେଖାଯାଇଥାଏ । ଏହି ରୋଗ ସ୍ଥାନୀୟ ସଂକ୍ରାମକ ରୋଗ ହିସାବରେ ଦେଖାଯାଉଥିଲେ ମଧ୍ୟ ପ୍ରତ୍ୟେକ ଦୁଇ ତିନି ବର୍ଷ ବ୍ୟବଧାନରେ ବ୍ୟାପକ ସଂକ୍ରାମକ ରୋଗ ଧାରଣ କରିଥାଏ । ସାଧାରଣତଃ ତିନିବର୍ଷରୁ ପାଞ୍ଚବର୍ଷ ବୟସର ପିଲାମାନେ ଏହି ରୋଗ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି । ଜନ୍ମ ହେବାର ପ୍ରଥମ ଛଅମାସ ମଧ୍ୟରେ ଏହି ରୋଗ ଶିଶୁ ମାନଙ୍କୁ ଆକ୍ରମଣ କରିପାରେ ନାହିଁ । ତଥାପି ଯେ କୌଣସି ବୟସର ଲୋକଙ୍କୁ ଏହି ରୋଗ ଆକ୍ରମଣ କରିଥାଏ । ଏହି ରୋଗର ଜୀବାଣୁ ସାଧାରଣତଃ ରୋଗୀର କାଶ କିମ୍ବା ଛିଙ୍କ ବେଳେ ଶ୍ୱାସପଥ ଦେଇ ନିଶ୍ୱାସରେ ବାହାରକୁ ଆସି ବାୟୁମଣ୍ଡଳରେ ମିଶି ରହି-ଥାଏ । ରୋଗୀର ବ୍ୟବହାର କରୁଥିବା ରୁମାଲ ଓ ତଉଲିଆରେ ଲାଗି ଥିବା ଶ୍ଳେଷ୍ମ ଓ ସିଂଘାଣୀ ମାଧ୍ୟମରେ ସୁସ୍ଥ ଲୋକ ମଧ୍ୟ ଏହି ରୋଗ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି । ଏହି ରୋଗର ମୃତ୍ୟୁ ହାର ସଂଖ୍ୟା ବହୁତ କମ୍ ହେଲେ ମଧ୍ୟ ଦୁର୍ବଳ ପିଲାମାନଙ୍କ ମୃତ୍ୟୁ ଅଧିକ ଦେଖାଯାଏ । ଏହି ରୋଗର ଜୀବାଣୁ ଦେହ ଭିତରକୁ ପ୍ରବେଶ କରିବାର ଦଶଦିନ ମଧ୍ୟରେ ରୋଗର ଲକ୍ଷଣ ସୁସ୍ଥ ଲୋକ ଦେହରେ ଦେଖାଯାଏ ।

ପ୍ରଥମାବସ୍ଥାରେ ଏହି ରୋଗ ଏତେ ନିଷ୍କ୍ରିୟ ଅବସ୍ଥାରେ ଦେଖାଯାଏ ଯେ ତାହାକୁ ଚିହ୍ନିବା କଷ୍ଟ ହୁଏ । ଏହି ରୋଗକୁ ସାଧାରଣତଃ ଦୁଇ ଭାଗରେ ଭାଗ କରାଯାଇଥାଏ । ଦେହରେ ଦାଗ ଯିବାର ପୂର୍ବ ଅବସ୍ଥା ଏବଂ ଦାଗ ଦେଖାଯିବା ଅବସ୍ଥା । ପ୍ରଥମ ଅବସ୍ଥାଟି ସାଧାରଣତଃ ତିନି ରୁ ଚାରି ଦିନ ପର୍ଯ୍ୟନ୍ତ ଥାଏ । ରୋଗୀକୁ ଜ୍ୱର ହୁଏ । ଛିଙ୍କ ଏବଂ କାଶ ହେବା ସଙ୍ଗେ ସଙ୍ଗେ ପାଣିପରି ସିଂଘାଣି

ବାହାରେ । ଆଖି ନାଲି ଦେଖାଯାଏ । ଏହାପରେ ପାଟି ଭିତରେ ନାଲ ମିଶ୍ରିତ ଛୋଟ ଛୋଟ ଧଳା ଦାଗ ଗୁଡ଼ିକ ଦେଖାଯାଏ । ରୋଗର ଦ୍ୱିତୀୟ ଅବସ୍ଥାରେ ପ୍ରଥମେ ମୁହଁ ଓ ବେକରେ ନାଲି କମ୍ବା ଧୂସର ରଙ୍ଗର ଦାଗଗୁଡ଼ିକ ଦେଖାଯାଏ । ୨/୪ ଦିନ ମଧ୍ୟରେ ଏହା ଦେହର ଅନ୍ୟାନ୍ୟ ଅଂଶ ତଥା ଗୋଡ ହାତରେ ଦେଖାଯାଏ । ଦେହ ବହୁତ କୁଣ୍ଡାଇ ହୁଏ । ଆଖି ପୋଡ଼ିବା ସଙ୍ଗେ ସଙ୍ଗେ ସେଥିରୁ ପାଣି ବାହାରେ । ପ୍ରାୟ ୫/୬ ଦିନ ପରେ ଏହି ଦାଗ ଗୁଡ଼ିକ ଲିଭିବାକୁ ଆରମ୍ଭ କରେ । ଏହା ମାଟିଆ ରଙ୍ଗ ପରି ଦେଖାଯାଏ ଏବଂ ସପ୍ତାହେ ପର୍ଯ୍ୟନ୍ତ ରହି-ଥାଏ । ଏହି ରୋଗ ଭଲ ହେବାପରେ ପରେ ସାଧାରଣତଃ ନିମୋନିଆ କାନ ପାଚିବା, ଆଖି ଧରିବା, ସ୍ମରଣ ଶକ୍ତି ଲୋପ ପାଇବା ଇତ୍ୟାଦି ବିଭିନ୍ନ ପ୍ରକାରର ଲକ୍ଷଣ ପିଲିପାଖରେ ଦେଖାଯାଏ । ଏଥି ପ୍ରତି ପ୍ରଥମରୁ ସଚେତନ ନ ରହିଲେ ପିଲି ମୃତ୍ୟୁ ମୁଖରେ ପଡ଼ିବାର ସମ୍ଭାବନା ରହିଥାଏ ।

ଏହି ରୋଗରୁ ରକ୍ଷାପାଇବା ପାଇଁ ଆମ ଦେଶରେ ଜୀବନ୍ତ ଭୂତାଣୁ ଦ୍ୱାରା ନିର୍ମିତ ଏକ ପ୍ରକାର ଟୀକାର ପ୍ରଚଳନ ହେଉଛି । ଏହି ଇଞ୍ଜେକ୍‌ସନ୍ ଶିଶୁ ଜନ୍ମ ହେବାର ଏକ ବର୍ଷ ବୟସରେ ମାଂସ ପେଶୀ ମଧ୍ୟରେ ଥରେ ଦିଆଯାଇଥାଏ । ଏହାର ରୋଗ ପ୍ରତିଷେଧକ ଶକ୍ତି ପ୍ରାୟ ଦଶ ପନ୍ଦର ବର୍ଷ ପର୍ଯ୍ୟନ୍ତ ରହିଥାଏ । ଏହି ଟୀକା ନେବା ପରେ ପରେ ସାଧାରଣତଃ ପିଲିଙ୍କୁ ଜ୍ୱର ହୋଇଥାଏ । ଦେହ ସାରା ନାଲି ଦାଗ ଦେଖାଯାଏ । ମାତ୍ର ଏହା ୨/୪ ଦିନ ମଧ୍ୟରେ ଭଲ ହୋଇଯାଏ । ଏହିଁ ଟୀକା ଦୁର୍ବଳ ତଥା ଯକ୍ଷ୍ମା, ପିତ୍ତଳା, ଏକ୍‌ଜିମା ଇତ୍ୟାଦି ରୋଗ ଥିବା ପିଲିଙ୍କୁ ଦିଆଯିବା ଉଚିତ ନୁହେଁ ।

## ପ୍ରତିଷେଧକ ବ୍ୟବସ୍ଥା :

ରୋଗୀକୁ ମୁକ୍ତ ବାୟୁ ଯିବା ଆସିବା କରୁଥିବା ଓ ସୂର୍ଯ୍ୟକିରଣ ପଡ଼ୁଥିବା ଘରେ ରଖିବା ଦରକାର । ବିଛଣା ଓ ଦେହରେ ଜୀବାଣୁ ନାଶକ ପାଉଡ଼ର ପକାଇବା ଉଚିତ । ଦେହ କୁଣ୍ଡାଇ ହେଲେ ନଖରେ

ନ କୁଣ୍ଡାଇ ହମ୍ମ, ପତ କମ୍ବା ନରମ ଲୁଗା ବ୍ୟବହାର କରିବା ଉଚିତ । ରୋଗୀର ବାସନ କୁସନ ଅଲଗା ରଖିବା ସଙ୍ଗେ ସଙ୍ଗେ ବିଛଣା ପତ୍ର ଓ ଲୁଗାପଟା ପ୍ରତ୍ୟେକ ଦିନ ଧୋଇ ଟାଣ ଖରାରେ ଶୁଖାଇବା ଆବଶ୍ୟକ । ରୋଗୀ ବ୍ୟବହାର କରୁଥିବା ରୁମାଲ ଓ ତଉଲିଆକୁ ଯେପରି ଅନ୍ୟ କେହି ବ୍ୟବହାର ନ କରନ୍ତି ସେଥିପ୍ରତି ଦୃଷ୍ଟି ଦେବା ଉଚିତ । ରୋଗୀକୁ ଯେପରି ଥଣ୍ଡା ନ ଲଗେ ସେଥିପାଇଁ ଗରମ ପୋଷାକ ବ୍ୟବହାର କରିବା ଉଚିତ । ରୋଗୀକୁ ଗରମ ଓ ପୁଷ୍ଟିକର ଖାଦ୍ୟ ଦିଆଯିବା ଉଚିତ ।

*

## ଗାଲୁଆ

ଏହା ଗୋଟିଏ ଭୟାବହ ସଂକ୍ରାମକ ରୋଗ । ଏକ ପ୍ରକାର ସୂକ୍ଷ୍ମ ଭୂତାଣୁ ଦେହରେ ଥିବା ଲାଳବାହୀ ଗ୍ରନ୍ଥି ତଥା ସ୍ନାୟୁ ଗୁଡ଼ିକୁ ଆକ୍ରମଣ କରି ଏହି ରୋଗ ସୃଷ୍ଟି କରିଥାଏ । ଏହା ସାଧାରଣତଃ ସ୍ଥାନୀୟ ସଂକ୍ରାମକ ରୋଗ ହିସାବରେ ଦେଖାଯାଏ । ମାତ୍ର ଗୋଟିଏ ସ୍ଥାନରେ ବହୁତ ଲୋକ ଏକାଠି ରହୁଥିଲେ ଏହା ବ୍ୟାପକ ସଂକ୍ରାମକ ଆକାର ଧାରଣ କରେ । ଏହି ରୋଗ ବର୍ଷର ପ୍ରାୟ ସବୁ ସମୟରେ ଦେଖା ଯାଉଥିଲେ ମଧ୍ୟ ଶୀତ ଓ ବସନ୍ତ ଋତୁରେ ଏହା ଅଧିକ ମାତ୍ରାରେ ଦେଖାଯାଏ ।

ସାଧାରଣତଃ ପାଞ୍ଚ ବର୍ଷରୁ ପନ୍ଦର ବର୍ଷ ବୟସର ପିଲାଙ୍କୁ ଏହି ରୋଗ ଆକ୍ରମଣ କରିଥାଏ । ଏକ ବର୍ଷରୁ କମ୍ ବୟସର ଶିଶୁ ତଥା ତିରିଶ ବର୍ଷରୁ ଅଧିକ ବୟସ୍କ ଲୋକମାନଙ୍କଠାରେ ଏହି ରୋଗ ପ୍ରାୟ ଦେଖାଯାଏ ନାହିଁ । ତଥାପି ଏହି ରୋଗର ନିର୍ଦ୍ଦିଷ୍ଟ ବୟସ ସୀମା ନାହିଁ । ଏହି ରୋଗର ଜୀବାଣୁ ସାଧାରଣତଃ ରୋଗୀର କାଶ, ଛିଙ୍କ ଓ ସିଂଘାଣୀ ମାଧ୍ୟମରେ ବାୟୁମଣ୍ଡଳକୁ ଆସି ସୁସ୍ଥ ଲୋକର ଶ୍ୱାସ ପଥର ଉପର ଭାଗକୁ ଆକ୍ରମଣ କରିଥାଏ । ଏହା ବ୍ୟକ୍ତିଗତ ରୋଗୀଦ୍ୱାରା

ବ୍ୟବହୃତ ହେଉଥିବା ବାସନ କୁସନ ତଥା ରୁମାଲ ଓ ତଉଲିଆ ମଧ୍ୟ ଏହି ରୋଗ ପ୍ରସାରରେ ବିଶେଷ ସାହାଯ୍ୟ କରିଥାଏ । ଦେହ ଭିତରକୁ ଜୀବାଣୁ ପ୍ରବେଶ କରିବାର ଦୁଇ ତିନି ସପ୍ତାହ ମଧ୍ୟରେ ରୋଗର ଲକ୍ଷଣ ପ୍ରକାଶ ପାଇଥାଏ । ଏହି ରୋଗ ଥରେ ହେଲେ ଦ୍ୱିତୀୟ ଥର ପାଇଁ ପ୍ରାୟ ହୁଏନାହିଁ । ମାତ୍ର କେତେକ କ୍ଷେତ୍ରରେ ପ୍ରତିରୋଧକ ଶକ୍ତି ହ୍ରାସ ପାଇବା ଫଳରେ ପୁନରାୟ ସେହି ଲୋକକୁ ଏହି ରୋଗ ଆକ୍ରମଣ କରିଥାଏ ।

କାନମୂଳର ତଳଭାଗ ତଥା ତଳ ଦାନ୍ତ ମାଢ଼ିର ଉପର ଭାଗରେ ଥିବା ଲାଳରସ ନିଃସୃତ ଗ୍ରନ୍ଥି ଫୁଲି ଦରଜ ହେବା ଏହି ରୋଗର ପ୍ରଥମ କାରଣ । ଏକାବେଳକେ ଦୁଇ ପାଖରେ ଥିବା ଦୁଇଟି ଗ୍ରନ୍ଥି ମଧ୍ୟ ଫୁଲିଯାଏ । ଗ୍ରନ୍ଥି ଗୁଡ଼ିକ ଫୁଲି ଦରଜ ହେବା ସଙ୍ଗେ ସଙ୍ଗେ ସାମାନ୍ୟ ଜ୍ୱର ହୁଏ । ମୁଣ୍ଡ ବିନ୍ଧେ ଓ ଦେହ ହାତ ଯନ୍ତ୍ରଣା ଦିଏ । ରୋଗୀ ପାଟି ଖୋଲିବା ତଥା ଖାଦ୍ୟ ପଦାର୍ଥ ଚୋବାଇ ଖାଇବାରେ ବିଶେଷ କଷ୍ଟ ଅନୁଭବ କରେ । ଭଲ ଭାବରେ ପାଟି ଭିତର ସଫା କରିପାରୁ ନ ଥିବାରୁ ମୁହଁରୁ ଏକ ପ୍ରକାର ଦୁର୍ଗନ୍ଧ ବାହାରେ । ରୋଗୀ କେବଳ ତରଳ ଖାଦ୍ୟ ଖାଇବାକୁ ଇଚ୍ଛା କରେ । ଏହିପରି ଅବସ୍ଥା ୩ ଦିନରୁ ୫ ଦିନ ପର୍ଯ୍ୟନ୍ତ ଲାଗି ରହେ । ସାଧାରଣତଃ ସ୍ନାୟୁ, ହୃତପିଣ୍ଡ, ଆଖି, କାନ, ଶୁକ୍ରକୀଟ ପ୍ରସ୍ତୁତ କରୁଥିବା ଗ୍ରନ୍ଥି ଏହି ରୋଗ ଦ୍ୱାରା ବିଶେଷ ଭାବରେ ଆକ୍ରାନ୍ତ ହୋଇଥାନ୍ତି । ଲାଳବାହୀ ଗ୍ରନ୍ଥି ଗୁଡ଼ିକ ଫୁଲି ଦରଜ ହେବା ସଙ୍ଗେ ସଙ୍ଗେ ଗଣ୍ଡି ମଧ୍ୟ ଫୁଲିଯାଏ । ଏକ ସପ୍ତାହରୁ ଦୁଇ ସପ୍ତାହ ମଧ୍ୟରେ ଗ୍ରନ୍ଥି ଗୁଡ଼ିକରୁ ଫୁଲା ଓ ଦରଜ କମିଯାଏ । ରୋଗୀ ଆସ୍ତେ ଆସ୍ତେ ପାଟି ମେଲା କରି ଖାଦ୍ୟ ପଦାର୍ଥକୁ ଚୋବାଇବାରେ ସମର୍ଥ ହୋଇଥାଏ । ଏହି ରୋଗରେ ମୃତ୍ୟୁ ସଂଖ୍ୟା ନାହିଁ କହିଲେ ଚଳେ । ମାତ୍ର ଯୁବକ ତଥା ବୟସ୍କ ଲୋକମାନଙ୍କୁ ଏହି ରୋଗ ଦ୍ୱାରା ଆକ୍ରାନ୍ତ ହେବା ସମୟରେ ଶୁକ୍ରକୀଟ ପ୍ରସ୍ତୁତ କରୁଥିବା ଗ୍ରନ୍ଥି ବିଶେଷ ଭାବରେ କ୍ଷତିଗ୍ରସ୍ତ ହୁଏ, ଏବଂ ସମୟ ସମୟରେ ସେମାନଙ୍କର ପିଲା ଜନ୍ମ କରାଇବା ଶକ୍ତି ଲୋପ ପାଇଥାଏ ।

ବର୍ତ୍ତମାନ ଆମେରିକା ଓ ରୁଷିଆରେ ଏହି ରୋଗରୁ ରକ୍ଷା ପାଇବା ପାଇଁ ଜୀବନ୍ତ ଜୀବାଣୁ ଦ୍ୱାରା ପ୍ରସ୍ତୁତ ଟୀକା ବିଶେଷ ଭାବରେ ପ୍ରୟୋଗ ହେଉଅଛି । ମାତ୍ର ଆମ ଦେଶରେ ଏହାକୁ ଠିକ୍ ଭାବରେ କାର୍ଯ୍ୟକାରୀ କରାଯାଇ ପାରିନାହିଁ । ସାଧାରଣତଃ ଏହି ଟୀକା ଏକ ବର୍ଷ ବୟସରୁ ଅଧିକ ହୋଇଥିବା ଶିଶୁକୁ ମାଂସପେଶୀ ମଧ୍ୟରେ ଗୋଟିଏ ଥର ଇଞ୍ଜେକ୍‌ସନ୍ ଆକାରରେ ଦିଆଯାଏ । ଏହି ଟୀକାର ଜୀବାଣୁ ପ୍ରତିରୋଧକ ଶକ୍ତି ପ୍ରାୟ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ରହିଥାଏ । ଏହି ଟୀକା ମଧ୍ୟ ହାଉପ୍ଟି ଓ ମିଳିମିଳା ରୋଗର ଜୀବାଣୁ ସହିତ ମିଶାଇ ଏକା ବେଳକେ ତିନୋଟି ରୋଗରୁ ରକ୍ଷା ପାଇବା ପାଇଁ ଡ଼ି. ପି. ଟି. ଇଞ୍ଜେକସନ୍ ପରି ଏକାଥରକେ ଦିଆଯାଇ ପାରେ ।

## ପ୍ରତିଷେଧକ ବ୍ୟବସ୍ଥା :

ଅନ୍ୟାନ୍ୟ ସଂକ୍ରାମକ ରୋଗ ପରି ଏହି ରୋଗ ଦ୍ୱାରା ଆକ୍ରାନ୍ତ ରୋଗୀକୁ ଖୋଲା ବାୟୁ ପ୍ରବେଶ କରୁଥିବା ତଥା ସୂର୍ଯ୍ୟାଲୋକ ପଡ଼ୁଥିବା ଘରେ ଏକୁଟିଆ ରଖିବା ଉଚିତ । ରୋଗୀ ବ୍ୟବହାର କରୁଥିବା ବାସନ କୁସନ, ଲୁଗାପଟା ପ୍ରଭୃତି ଯେପରି ସୁସ୍ଥ ଲୋକ ବ୍ୟବହାର ନ କରନ୍ତି ସେଥିପ୍ରତି ବିଶେଷ ଦୃଷ୍ଟି ଦିଆଯିବା ଦରକାର । ରୋଗ ଆକ୍ରାନ୍ତ ଅବସ୍ଥାରେ ପିଲାକୁ ବାହାରକୁ ଛାଡ଼ିବା ଉଚିତ ନୁହେଁ । କାରଣ ଏହାଦ୍ୱାରା ସାଙ୍ଗସାଥୀମାନେ ସହଜରେ ଏହି ରୋଗ ଦ୍ୱାରା ଆକ୍ରାନ୍ତ ହୋଇଥାନ୍ତି । ଦେହରେ ସର୍ବଦା ଗରମ ପୋଷାକ ବ୍ୟବହାର କରିବା ସଙ୍ଗେ ସଙ୍ଗେ ବିଶେଷ କରି ବେକ ଓ କାନର ଗୁଣ୍ଡି-ପଟେ ଗରମ ଲୁଗା ବାନ୍ଧି ରଖିବା ଉଚିତ । ଉଷୁମ ପାଣିରେ ଜୀବାଣୁ-ନାଶକ ଔଷଧ ପକାଇ ରୋଗୀର ପାଟିକୁ ଭଲ ଭାବରେ ଅନ୍ତତଃ ଦୁଇ ତିନିଥର ଧୋଇବା ଆବଶ୍ୟକ । ଏହାଦ୍ୱାରା ପାଟିରୁ ଦୁର୍ଗନ୍ଧ ବାହାରିବା କମିଯାଏ ଏବଂ ରୋଗର ଜୀବାଣୁ ସହଜରେ ନଷ୍ଟ ହୋଇଯାଏ । ରୋଗୀକୁ ଖାଲି ପେଟରେ ନ ରଖିବା ପାଇଁ କ୍ଷୀର, ବାର୍ଲି, ସାଗୁ ଇତ୍ୟାଦି ତରଳ ପଦାର୍ଥ ଖାଇବାକୁ ଦେବା ଉଚିତ । ଖାଦ୍ୟରସ ନିର୍ଗତ ହେଉଥିବା ଗ୍ରନ୍ଥିର ଉପର ଭାଗକୁ ବେଲାଡନା ମଟି ଦ୍ୱାରା

ଆକ୍ରାନ୍ତ କରିବା ସଙ୍ଗେ ସଙ୍ଗେ ଗରମ ସେକ ଦେଲେ ସୁଫଳ ମିଳିଥାଏ । ଗ୍ରାମାଞ୍ଚଳରେ ମହୁ ସହିତ କାଇଁଚ ଗଛର ପତ୍ର ମିଶାଇ ଫୁଲିଥିବା ଜାଗାରେ ମଧ୍ୟ ଦିଆଯାଏ । ରୋଗୀ ବ୍ୟବହାର କରୁଥିବା ଲୁଗାପଟା, ବିଛଣା ପତ୍ର ଗରମ ପାଣିରେ ସିଝାଇ ସଫା କରି ଖରାରେ ଶୁଖାଇବା ଦରକାର । ଫିନାଇଲ୍ ମିଶା ପାଣିରେ ଘରର କାନ୍ଥ ଓ ଚଟାଣକୁ ସଫା କରିବା ଆବଶ୍ୟକ । ଏହି ରୋଗ ପାଇଁ କୌଣସି ନିର୍ଦ୍ଦିଷ୍ଟ ଔଷଧ ନ ଥିଲେ ମଧ୍ୟ ଏହି ରୋଗ ଦ୍ୱାରା ଘଟୁଥିବା ଅନ୍ୟାନ୍ୟ ଅସୁବିଧା ପାଇଁ ଉଚ୍ଚ କ୍ଷମତା ସମ୍ପନ୍ନ ଜୀବାଣୁ ନାଶକ ବଟିକା ଯାଞ୍ଚ ଦିନରୁ ସାତଦିନ ପର୍ଯ୍ୟନ୍ତ ଡାକ୍ତରଙ୍କ ପରାମର୍ଶ ଅନୁସାରେ ଖାଇବାକୁ ଦେବା ଆବଶ୍ୟକ ।

*

## ଯକ୍ଷ୍ମା

ଯକ୍ଷ୍ମା ଏକ ଜୀବାଣୁ ଜାତ ସଂକ୍ରାମକ ରୋଗ । ଏହି ରୋଗ ଗୃହ ପାଳିତ ପଶୁ ତଥା ମନୁଷ୍ୟଙ୍କୁ ଆକ୍ରମଣ କରିଥାଏ । ପୃଥିବୀର ପ୍ରାୟ ସବୁ ଦେଶରେ ଏହି ରୋଗ ଦେଖାଯାଏ । ଏହି ରୋଗରେ ମୃତ୍ୟୁହାର ବହୁତ ପରିମାଣରେ ହ୍ରାସ ପାଇଥିଲେ ମଧ୍ୟ ଏହା ଏକ ମାରାତ୍ମକ ରୋଗ । ପିଲମାନଙ୍କଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ସବୁ ବୟସର ସ୍ତ୍ରୀ ଓ ପୁରୁଷଙ୍କୁ ଏହି ରୋଗ ଆକ୍ରମଣ କରିଥାଏ । ବର୍ତ୍ତମାନ ପୃଥିବୀରେ ଅସଂଖ୍ୟ ନରନାରୀ ଏହି ରୋଗରେ ଆକ୍ରାନ୍ତ ହୋଇଛନ୍ତି । ରୋଗୀର ଛେପ ଓ ଖଙ୍କାରରେ ଜୀବାଣୁ ବାହାରକୁ ଆସି ପବନରେ ମିଶି ରହିଥାଏ । ଏହି ଦୂଷିତ ପବନ ସୁସ୍ଥ ଲୋକର ପ୍ରଶ୍ୱାସ ବାୟୁରେ ଯାଇ ରୋଗ ଜନ୍ମାଇଥାଏ । ରୋଗୀ ସଙ୍ଗେ ଖାଇଲେ କିମ୍ବା ରୋଗୀର ବାସନ କୁସନ ଓ ଲୁଗାପଟା ବ୍ୟବହାର କଲେ ମଧ୍ୟ ଏହି ରୋଗ ହୋଇଥାଏ । ଗୋରୁଗାଈ ଦେହରେ ଯେତେବେଳେ ଏହି ରୋଗ

ଦେଖାଯାଏ, ସେତେବେଳେ ଗାଈର କ୍ଷୀରରେ ମଧ୍ୟ ଜୀବାଣୁ ଥାଏ । ସେହି କ୍ଷୀର କଞ୍ଚା କମ୍ବା ଭଲ ଭାବରେ ନ ଫୁଟାଇ ଖାଇଲେ ଏହି ରୋଗ ହୋଇଥାଏ ।



ଯକ୍ଷ୍ମା ରୋଗୀ

ଏହି ଜୀବାଣୁ ମନୁଷ୍ୟର ଯେ କୌଣସି ଅଙ୍ଗରେ ରୋଗ ଜନ୍ମାଇ ପାରେ । ସାଧାରଣତଃ ଏହା ଫୁସ୍‌ଫୁସ୍‌କୁ ଆକ୍ରମଣ କରେ ଏବଂ ତାହାର ପଛ ଫୁସ୍‌ଫୁସ୍‌ର ଉପରି ଭାଗ ବିଶେଷ ଭାବରେ ଆକ୍ରାନ୍ତ ହୋଇଥାଏ । ଫୁସ୍‌ଫୁସ୍ ବ୍ୟତୀତ ଶରୀରର ମେରୁଦଣ୍ଡ ହାଡ଼, ପେଟ ଭିତରର ଅନ୍ତନଳୀ, ମସ୍ତିଷ୍କ ଓ ବେକ ପାଖରେ ଥିବା ଗ୍ରନ୍ଥି ଗୁଡ଼ିକ ଏହି ଜୀବାଣୁ ଦ୍ୱାରା ଆକ୍ରାନ୍ତ ହୋଇ ବିଭିନ୍ନ ପ୍ରକାରର ଲକ୍ଷଣ ପ୍ରକାଶ କରିଥାନ୍ତି । ପ୍ରଥମାବସ୍ଥାରେ ରୋଗୀକୁ ପ୍ରତିଦିନ ସନ୍ଧ୍ୟାବେଳେ ଜ୍ୱର ହୋଇଥାଏ । କ୍ରମେ କ୍ରମେ ରୋଗୀକୁ ଦୁର୍ବଳ ଲାଗେ ଏବଂ ଓଜନ ହ୍ରାସ ପାଏ । ରୋଗୀକୁ ଖୁଁ ଖୁଁ କାଶ ହୁଏ । ସକାଳେ କାଶ ବେଶୀ ହୁଏ ଏବଂ କିଛିଦିନ ପରେ କାଶ ସଙ୍ଗେ କଫ ଓ ରକ୍ତ ମଧ୍ୟ ପଡ଼େ । ଏହି ରୋଗ ଯଦି ଗ୍ରନ୍ଥିରେ ହୁଏ, ତେବେ ବେକରେ ଥିବା ଗ୍ରନ୍ଥି

ଗୁଡ଼ିକ ଫୁଲି ବଡ଼ ବଡ଼ ଦେଖାଯାଏ ଏବଂ କିଛୁଦିନ ପରେ ଏହା ଫାଟି ସେଥିରୁ ପୂଜ ବାହାରେ । ଏହି ଜୀବାଣୁ ଯଦି ଅନ୍ତନଳୀକୁ ଆକ୍ରମଣ କରେ, ତେବେ ରୋଗୀର ଝାଡ଼ା ହୁଏ ଏବଂ କ୍ରମେ କ୍ରମେ ଅନ୍ତନଳୀ ରାସ୍ତା ବନ୍ଦ ହୋଇ ପେଟ ଫୁଲିଯାଏ ଓ ବାନ୍ତି ହୁଏ । ରୋଗୀ ପାଟି-ବାଟେ କିଛି ଖାଇପାରେ ନାହିଁ । ଏହି ରୋଗ ଯେତେବେଳେ ହାଡ଼ରେ ଦେଖାଯାଏ ହାଡ଼ଟି ଫୁଲିଯାଏ, ଦରଜ ହୁଏ ଏବଂ ଚଳ ପ୍ରଚଳରେ ଅସୁବିଧା ସୃଷ୍ଟି କରେ ।

ଯକ୍ଷ୍ମା ରୋଗର ଆକ୍ରମଣରୁ ରକ୍ଷା ପାଇବା ପାଇଁ ବି. ସି. ଜି. ଟୀକା ଦିଆ ଯାଇଥାଏ । ପିଲା ଜନ୍ମ ହେବାର ବର୍ଷକ ମଧ୍ୟରେ ଏହି ଟୀକା ଦିଆ ଯାଇଥାଏ । ବର୍ତ୍ତମାନ ୨୦ ବର୍ଷ ବୟସର ଲୋକମାନଙ୍କୁ ମଧ୍ୟ ଏହି ଟୀକା ଦିଆଯାଇ ଦେହର ପ୍ରତିରୋଧକ ଶକ୍ତି ବୃଦ୍ଧି କରା-ଯାଉଅଛି ।

ଉପଯୁକ୍ତ ଚିକିତ୍ସା ଦ୍ୱାରା ଏହି ରୋଗରେ ଆକ୍ରାନ୍ତ ବ୍ୟକ୍ତି ଆରୋଗ୍ୟ ଲାଭ କରିଥାଏ । ପ୍ରଥମରେ ଏହି ରୋଗ ପାଇଁ କୌଣସି ଫଳପ୍ରଦ ଔଷଧ ନଥିଲା । ତେଣୁ ଏହି ରୋଗରେ ଆକ୍ରାନ୍ତ ବ୍ୟକ୍ତି ମୃତ୍ୟୁ ବରଣ କରୁଥିଲା । ମାତ୍ର ଆଜିକାଲି ଏହି ରୋଗର ଚିକିତ୍ସା ପାଇଁ ବିଭିନ୍ନ ପ୍ରକାରର ଉପଯୁକ୍ତ ଔଷଧ ମିଳୁଛି । ଡାକ୍ତରଙ୍କ ପରା-ମର୍ଶ ଅନୁସାରେ ଏକ ବର୍ଷରୁ ଦେଡ଼ ବର୍ଷ ପର୍ଯ୍ୟନ୍ତ ଏହି ଔଷଧ ଗୁଡ଼ିକ ନିୟମିତ ଭାବରେ ସେବନ କଲେ, ଏହି ରୋଗରୁ ରକ୍ଷା ମିଳିଥାଏ । ଆଜିକାଲି ଆମ ଦେଶରେ ଏହି ରୋଗ ପାଇଁ ସ୍ୱତନ୍ତ୍ର ଡାକ୍ତରଖାନାର ବନ୍ଦୋବସ୍ତ କରାଯିବା ସଙ୍ଗେ ସଙ୍ଗେ ବିନା ପଇସାରେ ସମସ୍ତ ପ୍ରକାରର ଔଷଧ ତଥା ପୁଷ୍ଟିକର ଖାଦ୍ୟ ଯୋଗାଇ ଦିଆଯିବାର ବ୍ୟବସ୍ଥା ହୋଇଛି ।

**ପ୍ରତିଷେଧକ ବ୍ୟବସ୍ଥା :**

ଉନ୍ମୁକ୍ତ ବିଶୁଦ୍ଧ ବାୟୁ, ପ୍ରଚୁର ସୂର୍ଯ୍ୟ କିରଣ ଓ ସୁଷମ ଖାଦ୍ୟ ଏ ରୋଗର ଉପଯୁକ୍ତ ପ୍ରତିଷେଧକ ପନ୍ଥା । ରୋଗୀକୁ ଗୋଟିଏ

ଅଲଗା ଘରେ ରଖିବା ସଙ୍ଗେ ସଙ୍ଗେ ତା ସହିତ ଶୁଆବସା କମ୍ବା ଖିଆପିଆ କରିବା ଉଚିତ ନୁହେଁ । ରୋଗୀ କାଶିଲା, ଛିଙ୍କିଲା ବା କଥା କହିଲା ବେଳେ ମୁହଁକୁ ରୁମାଲ ବା ସଫାଲୁଗା ଦ୍ୱାରା ଘୋଡ଼ାଇ ରଖିବା ଉଚିତ । ସାଧାରଣ ଖାଦ୍ୟ ସହିତ କିଛି ପରିମାଣର କ୍ଷୀର, ଅଣ୍ଡା ଓ ଫଳ ଇତ୍ୟାଦି ରୋଗୀକୁ ଖାଇବାକୁ ଦେବା ଉଚିତ । ରୋଗୀର ଶ୍ଳେଷ୍ମ, ଖଙ୍କାରକୁ ଏଣେତେଣେ ନ ପକାଇ ଗୋଟିଏ ପାତ୍ରରେ ରଖି ପରେ ଏହାକୁ ନିଆଁରେ ପୋଡ଼ିଦେବା ଉଚିତ । ରୋଗୀର ବିଛଣାପତ୍ର ପ୍ରତ୍ୟେକ ଦିନ ଟାଣ ଖରାରେ ଶୁଖାଇବା ଉଚିତ ।

*

# ହଇଜା ବା ଝାଡ଼ାବାନ୍ତି

ଏହା ଗୋଟିଏ ମାରାତ୍ମକ ସଂକ୍ରାମକ ରୋଗ ଏବଂ ଏକପ୍ରକାର ଜୀବାଣୁ ଦ୍ୱାରା ସୃଷ୍ଟି ହୋଇଥାଏ । ଆମ ଦେଶରେ ଏହି ରୋଗ ସାଧାରଣତଃ ବର୍ଷାଋତୁର ଆରମ୍ଭରେ ବିଶେଷ ଭାବରେ ଦେଖାଯାଏ । ରୋଗୀର ଝାଡ଼ା ଓ ବାନ୍ତିରେ ଏହି ଜୀବାଣୁ ଦେଖାଯାନ୍ତି । ଏହି ଝାଡ଼ା ଓ ବାନ୍ତିର ସଂସ୍ପର୍ଶରେ ଆସୁଥିବା ଜଳ ଏବଂ ଖାଦ୍ୟପଦାର୍ଥ ସୁସ୍ଥ ଲୋକ ଖାଇବା ଦ୍ୱାରା ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଏତଦ୍‌ବ୍ୟତୀତ ମାଛି ଜୀବାଣୁ ପୂର୍ଣ୍ଣ ଝାଡ଼ା ଓ ବାନ୍ତିରେ ବସି ପରେ ଖାଦ୍ୟପଦାର୍ଥରେ ବସିଲେ ଏହା ଦୂଷିତ ହୋଇଥାଏ ଏବଂ ରୋଗ ଶୀଘ୍ର ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ସଂକ୍ରମିତ ହୋଇଥାଏ । ରୋଗୀ ଦ୍ୱାରା ବ୍ୟବହୃତ ହେଉଥିବା ଲୁଗାପଟା ଓ ବାସନକୁସନ ମଧ୍ୟ ଏହି ରୋଗ ପ୍ରସାରର ସହାୟକ ହୋଇଥାଏ ।

ରୋଗ ଦେଖାଯିବାର ପ୍ରାରମ୍ଭରେ ରୋଗୀକୁ ଚାଉଳଧୁଆ ପାଣି ପରି ପତଳା ଝାଡ଼ା ହେବା ସଙ୍ଗେ ସଙ୍ଗେ ପାଣିପରି ବାନ୍ତି ମଧ୍ୟ ହୁଏ । ଗୋଟିଏ ଦିନ ଭିତରେ ୪୦ରୁ ୫୦ଥର ପତଳା ଝାଡ଼ା ହେବା ଫଳରେ

ରୋଗୀ ବହୁତ ଦୁର୍ବଳ ହୋଇପଡ଼େ । ଗାଲ ଓ ଆଖି ଭିତରକୁ ପଶିଯାଏ । ହାତ ଓ ପାଦ ଧଳା ଦେଖାଯାଏ । ଦେହର ଉତ୍ତାପ କମିଯାଏ ଏବଂ



ଓଳଉଠା ରୋଗୀ

ନିଶ୍ୱାସ ପ୍ରଶ୍ୱାସ ପ୍ରଖର ହୁଏ । ପରିସ୍ରା କମି କମି ସମ୍ପୂର୍ଣ୍ଣ ବନ୍ଦ ହୋଇଯାଏ । ରୋଗୀ ଖୁବ୍ ବ୍ୟସ୍ତ ବ୍ୟସ୍ତ ହୁଏ । ତଣ୍ଟି ଶୁଖିଯାଏ ଏବଂ ଗୋଡ଼ ହାତର ମାଂସପେଶୀ ଟାଣ ହୋଇଯାଏ । ସାଧାରଣତଃ ଏହି ସମୟରେ ଦେହ ଭିତରେ ପାଣିର ଅଭାବ ଯୋଗୁଁ ସନ୍ନିପାତ ହୋଇ ରୋଗୀ ମୃତ୍ୟୁ ମୁଖରେ ପଡ଼ିଥାଏ । ଏହାପରେ ରୋଗୀର ଝାଡ଼ା ଓ ବାନ୍ତି ଆସ୍ତେ ଆସ୍ତେ କମିଯାଏ । ଦେହର ଉତ୍ତାପ ସାଧାରଣ ହୋଇଯାଏ । ସାଧାରଣତଃ ଦୁଇରୁ ତିନିଦିନ ମଧ୍ୟରେ ରୋଗୀ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିଥାଏ । ପିଲାମାନଙ୍କୁ ଏହି ରୋଗ ଆକ୍ରମଣ କଲେ ସାମାନ୍ୟ ଜ୍ୱର ହୁଏ । ବହୁତ ଥର ଝାଡ଼ା ନ ହେଲେ ମଧ୍ୟ ପିଲା ନିସ୍ତେଜ ହୋଇ ପଡ଼େ ଏବଂ ସବୁବେଳେ ଶୋଇ ରହେ । ବେଳେବେଳେ ପିଲାର ହାତ ଗୋଡ଼ ଟାଣି ଟାଣି ହୋଇ ପିଚ୍ଛୁଳା ମାରେ ଏବଂ ପିଲା ମୃତ୍ୟୁ ମୁଖରେ ପଡ଼ିଥାଏ ।

ହଇଜା ଆକ୍ରମଣରୁ ରକ୍ଷା ପାଇବା ପାଇଁ ହଇଜା ପ୍ରତିଷେଧକ ଟୀକା ନେବା ବିଧେୟ । ସାଧାରଣତଃ ଏକ ବର୍ଷରୁ କମ୍ ବୟସର ପିଲାଙ୍କୁ ଏହି ଟୀକା ଦିଆଯାଏ ନାହିଁ । ଏହି ଇଂଜେକସନ୍ ନେବାପରେ ସେ ସ୍ଥାନଟି ଅଳ୍ପ ଫୁଲି ନାଲି ଦେଖାଯାଏ, ଦରଜ ହୁଏ ଏବଂ ସାମାନ୍ୟ

ଜ୍ୱର ହୁଏ । ଦୁଇ ତିନ ଦିନ ମଧ୍ୟରେ ଏହା ସଂପୂର୍ଣ୍ଣ ଭଲ ହୋଇଯାଏ । ତୀର୍ଥସ୍ଥାନ, ଯାତ୍ରାସ୍ଥାନ ଓ ମେଳା ପ୍ରଭୃତିରେ ବହୁତ ଲୋକଙ୍କ ସମାଗମ ଯୋଗୁଁ ପାନୀୟ ଜଳ, ଖାଦ୍ୟ ପଦାର୍ଥ ଦୂଷିତ ହେବା ସଙ୍ଗେ ସଙ୍ଗେ ହଇଜା ବ୍ୟାପିବାର ବହୁତ ସମ୍ଭାବନା ଥିବାରୁ ପ୍ରତ୍ୟେକ ଲୋକ ଏହି ଟୀକା ନେବା ଉଚିତ ।

## ପ୍ରତିଷେଧକ ବ୍ୟବସ୍ଥା :

କୌଣସି ବ୍ୟକ୍ତିକୁ କ୍ରମାଗତ ୧୦ । ୧୨ ଥର ପତଳା ଝାଡ଼ା ଓ ବାନ୍ତି ହେଲେ ତାହାର ଝାଡ଼ାକୁ ପରୀକ୍ଷା କରାଇ କଲେରା ଜୀବାଣୁ ଥିଲେ ଶୀଘ୍ର ଚିକିତ୍ସା ଆରମ୍ଭ କରିବା ଦରକାର । ରୋଗୀକୁ ଗୋଟିଏ ଅଲଗା ଘରେ ରଖିବା ଉଚିତ । ରୋଗୀ ପାଖକୁ ବେଶୀ ଲୋକ ବା ପିଲାମାନେ ଯିବା ଆସିବା କରିବା ଉଚିତ ନୁହେଁ । ରୋଗୀର ଝାଡ଼ାବାନ୍ତି ଏକାଠି ଗୋଟିଏ ପାତ୍ରରେ ରଖି ଘର ପାଖରୁ ଦୂରରେ ଗାତ ଖୋଳି ଅଳଆ ଧୂଳିରେ ମିଶାଇ ପୋତିଦେବା ଉଚିତ । କୌଣସି ସ୍ଥାନରେ ହଇଜା ରୋଗ ବ୍ୟାପିବାର ଜଣାଗଲେ ସଙ୍ଗେ ସଙ୍ଗେ ନିକଟସ୍ଥ ଡାକ୍ତର-ଖାନାରେ ଥିବା ଡାକ୍ତରଙ୍କୁ ଖବର ଦେବା ଉଚିତ । ଏହା ଫଳରେ ରୋଗୀର ଚିକିତ୍ସାରେ ସୁବିଧା ହେବା ସଙ୍ଗେ ସଙ୍ଗେ ସ୍ଥାନୀୟ ଲୋକ-ମାନଙ୍କୁ ହଇଜା ପ୍ରତିଷେଧକ ଟୀକା ଦିଆଯାଇ ରୋଗ କବଳରୁ ସହଜରେ ରକ୍ଷା କରାଯାଇ ପାରିବ ।

ଏହି ରୋଗର ଏକମାତ୍ର ଚିକିତ୍ସା ହେଲା ଯେତିକି ମାତ୍ରାରେ ପାଣି ଦେହ ଭିତରୁ ଝାଡ଼ା ଓ ବାନ୍ତି ମାଧ୍ୟମରେ ବାହାରକୁ ବାହାରି ଆସିଥାଏ, ସେତିକି ପାଣି ଦେହ ଭିତରକୁ ଭର୍ତ୍ତି କରାଯାଇ ଦେହରେ ଥିବା ପାଣିର ମାତ୍ରାକୁ ସମାନ ପରିମାଣ କରିବା ଏବଂ ହଇଜା ଜୀବାଣୁନାଶକ ଔଷଧ ଖାଇବା । ତେଣୁ ରୋଗୀକୁ ଚିନିପାଣି ସଙ୍ଗେ ସାମାନ୍ୟ ଲୁଣ ମିଶାଇ ମନଇଚ୍ଛା ପିଇବାକୁ ଦେବା ଉଚିତ । ପଇଡ଼ପାଣି ଏଥିପାଇଁ ସର୍ବୋତ୍କୃଷ୍ଟ । ବର୍ତ୍ତମାନ ବଜାରରେ ଓରସ୍ (ORS) ନାମକ ଏକ ପ୍ରକାର ପାଉଡ଼ରର ପୁଡ଼ିଆ ମିଳୁଛି । ଏକ ଲିଟର ବିଶୁଦ୍ଧ ପାଣିରେ ଏହି ପୁଡ଼ିଆରେ ଥିବା

ଚାଉଳ୍ପ୍ରକୁ ଭଲ ଭାବରେ ଗୋଳାଇ ପ୍ରତ୍ୟେକ ୨ ଘଣ୍ଟାରୁ ୪ ଘଣ୍ଟା ଅନ୍ତରରେ ରୋଗୀକୁ ପିଇବାକୁ ଦେବା ଉଚିତ । ଯଦି ରୋଗୀର ଝାଡ଼ା ବନ୍ଦ ନହୁଏ ଏବଂ ରୋଗୀ ସନ୍ନିପାତ ଆଡ଼କୁ ଗତି କରେ ତେବେ ତା ଶିରାରେ ଗ୍ଲୁକୋଜ ସେଲାଇନ ଇଂଜେକ୍‌ସନ୍ ଦେବା ବିଧେୟ । ତା ନ ହେଲେ ରୋଗୀକୁ ନିକଟସ୍ଥ ସ୍ୱାସ୍ଥ୍ୟକେନ୍ଦ୍ରକୁ ଶୀଘ୍ର ସ୍ଥାନାନ୍ତରିତ କରିବା ଉଚିତ । ଝାଡ଼ା ଓ ବାନ୍ତି କମି ଆସିଲେ ରୋଗୀକୁ ପତଳା ବାର୍ଲି ପିଇବାକୁ ଦେବା ଦରକାର । କ୍ରମେ କ୍ରମେ ଅଳ୍ପ ପରିମାଣର ଭାତକୁ ଭଲ ଭାବରେ ସିଝାଇ ଦୁଧ ସଙ୍ଗେ ଚକଟି ଖାଇବାକୁ ଦିଆଯାଇପାରେ । ଏହା ଦ୍ୱାରା ରୋଗୀ ୫ । ୬ ଦିନ ମଧ୍ୟରେ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରେ ଏବଂ ସୁସ୍ଥ ଲୋକ ପରି ଖାଦ୍ୟ ପଦାର୍ଥ ଖାଇବା ଓ ଚଳପ୍ରଚଳ କରିବାରେ ସମର୍ଥ ହୁଏ ।

ଏହି ରୋଗ ଯେପରି ନ ହେବ ସେଥିପାଇଁ ସର୍ବଦା ପାଣିକୁ ଫୁଟାଇ ଥଣ୍ଡାକରି ପିଇବା ଉଚିତ । ଖାଦ୍ୟ ପଦାର୍ଥ ସର୍ବଦା ଘୋଡ଼ାଇ ରଖିବା ଉଚିତ । ସବୁବେଳେ ତଟକା ଓ ଗରମ ଖାଦ୍ୟ ଖାଇବା ଦରକାର । ବଜାର ତଥା ହୋଟେଲରେ ଖାଇବା ଉଚିତ ନୁହେଁ । ବାସି, ପଚୁସଢ଼ା କିମ୍ବା କଞ୍ଚା ଫଳମୂଳ ଖାଇବା ଉଚିତ ନୁହେଁ । ଏଣେ ତେଣେ ଝାଡ଼ା ନ ଯାଇ ଗୋଟିଏ ସ୍ଥାନରେ ବଡ଼ ଗାତ ଖୋଳି ଝାଡ଼ା ଫେରିବା ଦରକାର ଏବଂ ପରେ ମାଛି ଯେପରି ବସି ନ ପାରନ୍ତି ସେଥି-ପାଇଁ ତା ଉପରେ ମାଟି ଘୋଡ଼ାଇ ଦେବା ବିଧେୟ । ଲୋକମାନଙ୍କୁ ରେଡ଼ିଓ, ଚଳଚ୍ଚିତ୍ର ଓ ଟେଲିଭିଜନ ମାଧ୍ୟମରେ ରୋଗ କିପରି ପ୍ରସାର ଲାଭ ନ କରି ପାରିବ ସେ ବିଷୟରେ ଉପଯୁକ୍ତ ଶିକ୍ଷା ଦେବା ଉଚିତ ।

*

# ଆନ୍ତ୍ରିକଜ୍ୱର ବା ଟାଇଫଏଡ୍

ଆନ୍ତ୍ରିକଜ୍ୱର କହିଲେ ଟାଇଫଏଡ୍ ଓ ପାରାଟାଇଫଏଡ୍ ରୋଗକୁ ବୁଝାଏ । ଏହି ରୋଗ ଏକ ପ୍ରକାର ଜୀବାଣୁ ଦ୍ୱାରା ଜାତ ହୋଇଥାଏ । ଏହା ପୃଥିବୀର ପ୍ରାୟ ସବୁଦେଶରେ ଦେଖାଯାଏ । ଭାରତ-ବର୍ଷରେ ଏହି ରୋଗ ଏକ ବ୍ୟାପକ ତଥା ସାଧାରଣ ଜନସ୍ୱାସ୍ଥ୍ୟ ସମସ୍ୟା ରୂପେ ଦେଖା ଦେଇଛି । ଆମେରିକା ଓ ଇଂଲଣ୍ଡରେ ଏହି ରୋଗରେ ମୃତ୍ୟୁହାର ସଂଖ୍ୟା ଅଧିକ ହ୍ରାସ ପାଇଥିଲେ ହେଁ ଭାରତବର୍ଷରେ ଏହି ହାର ସନ୍ତୋଷ ଜନକ ନୁହେଁ ।

ଏହି ରୋଗ ସାଧାରଣତଃ ୧୦ ବର୍ଷରୁ ୩୦ ବର୍ଷ ବୟସର ଲୋକମାନଙ୍କୁ ବିଶେଷ ଭାବରେ ଆକ୍ରମଣ କରୁଥିଲେ ମଧ୍ୟ ଏଥିପାଇଁ କୌଣସି ନିର୍ଦ୍ଦିଷ୍ଟ ବୟସ ସୀମା ନ ଥାଏ । ମହିଳାମାନେ ଏହି ରୋଗର ଜୀବାଣୁ ବାହକ ହୋଇଥିଲେ ମଧ୍ୟ ପୁରୁଷମାନେ ଅଧିକ ସଂଖ୍ୟାରେ ଏଥିରେ ଆକ୍ରାନ୍ତ ହୋଇଥାନ୍ତି । ଏହି ରୋଗର ଜୀବାଣୁ ସାଧାରଣତଃ ରୋଗୀର ଝାଡ଼ା ଓ ପରିସ୍ରାରେ ବହୁତ ପରିମାଣରେ ଥାଆନ୍ତି ଏବଂ ଦୂଷିତ ଜଳ ଓ ଖାଦ୍ୟ ଦ୍ୱାରା ଏହା ପ୍ରସାର ଲାଭ କରିଥାଏ । ମାଛି ରୋଗୀର ଝାଡ଼ାରେ ବସିବା ପରେ ଖାଦ୍ୟ ପଦାର୍ଥ ଉପରେ ବସିଲେ ତା ଗୋଡରେ ଲାଗିଥିବା ଜୀବାଣୁ ଦ୍ୱାରା ଖାଦ୍ୟକୁ ଦୂଷିତ କରେ ଏବଂ ସୁସ୍ଥ ଲୋକ ସେହି ଖାଦ୍ୟ ଖାଇଲେ ସହଜରେ ରୋଗର ସମ୍ମୁଖୀନ ହୋଇଥାନ୍ତି । ଏହା ବ୍ୟତୀତ କଞ୍ଚା କ୍ଷୀର ପିଇଲେ କିମ୍ବା ନାଳ ନର୍ଦ୍ଦମା ପାଖରେ ହୋଇଥିବା ପନିପରିବା କଞ୍ଚା ଖାଇଲେ ଏହି ରୋଗର ଜୀବାଣୁ ପେଟ ଭିତରକୁ ଯାଇ ରୋଗ ସୃଷ୍ଟି କରିଥାଏ । ଏହି ରୋଗ ବର୍ଷର ପ୍ରାୟ ସବୁ ସମୟରେ ଦେଖାଯାଉଥିଲେ ହେଁ ବର୍ଷା ଋତୁରେ ଏହା ବହୁଳ ଭାବରେ ଦେଖାଯାଏ ।

ଏହି ରୋଗରେ ଆକ୍ରାନ୍ତ ହେଲେ ପ୍ରଥମ ୩/୫ ଦିନ ଅଳ୍ପ ଅଳ୍ପ ମୁଣ୍ଡ ବିନ୍ଧେ । ଦେହ ଖୋଲା-ବିନ୍ଧା ହୁଏ । ଜର ଜର ଲାଗେ ।

ଖାଇବାକୁ କିଛି ଇଚ୍ଛା ହୁଏନାହିଁ କି ଶାରୀରିକ ତଥା ମାନସିକ ପରିଶ୍ରମ କରିବାକୁ ଆଗ୍ରହ ହୁଏନାହିଁ । ଦେହର ଉତ୍ତାପ ସନ୍ଧ୍ୟାବେଳକୁ ସାମାନ୍ୟ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସପ୍ତାହକ ଭିତରେ ଏହା ୧୦୩° ରୁ ୧୦୪° ପର୍ଯ୍ୟନ୍ତ ହୋଇଥାଏ ଏବଂ ଜ୍ୱର ମଝିରେ ମଝିରେ ସାମାନ୍ୟ କମି ଯାଉଥିଲେ ମଧ୍ୟ କେତେବେଳେ ସ୍ୱାଭାବିକ ହୁଏନାହିଁ । ପ୍ରଥମାବସ୍ଥାରେ ଝାଡ଼ା ସଫା ହୁଏନାହିଁ । ମାତ୍ର ପରେ ପାଣି ପରି ପତଳା, ମାଟିଆ ଧୂସର ରଙ୍ଗର ଝାଡ଼ା ହୁଏ । ଜିଭ ଶୁଖିଯାଏ ଏବଂ ଜିଭର ମଧ୍ୟ ଭାଗରେ ଏକ ବହଳିଆ ସ୍ତର ପଡ଼ିଥିବାର ଦେଖାଯାଏ । ରୋଗୀର ପ୍ଲୀହା ବଢ଼ିଯାଏ ଏବଂ ବାମ ପଟ ପେଟ ଚିପିଲେ ଦରଜ ଲାଗେ । ରୋଗୀର ଏହିପରି ଅବସ୍ଥାକୁ "ସମ୍ପୂର୍ଣ୍ଣ ଟାଇଫଏଡ଼" ବୋଲି କୁହାଯାଏ । ଆସ୍ତେ ଆସ୍ତେ ରୋଗୀର ଦେହ ହାତ ଥରିବା, ଅସ୍ପଷ୍ଟ କଥାଭାଷା, ମାଂସପେଶୀ ଟାଣି ହୋଇଯିବା ଏବଂ ବିଛଣାରେ ଝାଡ଼ା ପରିସ୍ରା ହେବା ଇତ୍ୟାଦି ସ୍ନାୟୁବିକ ଦୁର୍ବଳତା ବିଶେଷ ଭାବରେ ପରିଲକ୍ଷିତ ହୁଏ । ରୋଗୀର ନାଡ଼ି କ୍ରମେ କ୍ରମେ ହ୍ରାସ ପାଏ । ଏହି ରୋଗ କେତେବେଳେ ପୂର୍ବପରି କ୍ରମାଗତ ନ ହୋଇ ପାଳିଜ୍ୱର ଭଳି ହଠାତ୍ ଜ୍ୱର ଓ କମ୍ପରୁ ଆରମ୍ଭ ହୋଇ-ଥାଏ । ସାଧାରଣତଃ ଶିଶୁ ଓ ଛୋଟ ପିଲାମାନଙ୍କୁ ଏହି ରୋଗ ଆକ୍ରମଣ କଲେ ବାନ୍ତି ଓ ଝାଡ଼ା ହୁଏ କମ୍ପା ଜ୍ୱର ଥିଲାବେଳେ ପିଚୁଳା ମାରେ ।

ବର୍ତ୍ତମାନ ଆମ ଦେଶରେ ଏହି ରୋଗରୁ ରକ୍ଷା ପାଇବା ପାଇଁ ଏକ ପ୍ରକାର ଟୀକାର ପ୍ରଚଳନ କରାଯାଇଛି । ଏହି ଟୀକା ସାଧାରଣତଃ ଏକ ବର୍ଷରୁ ଊର୍ଦ୍ଧ୍ୱ ପିଲାଙ୍କୁ ଦିଆ ଯାଇଥାଏ । ଏହି ଇଞ୍ଜେକ୍‌ସନ୍ ଚାରି ସପ୍ତାହରୁ ଛଅ ସପ୍ତାହ ବ୍ୟବଧାନରେ ଦୁଇଥର ମାଂସପେଶୀ ମଧ୍ୟରେ ଦିଆ ଯାଇଥାଏ । ଏହି ଟୀକା ନେବା ପରେ ଦେହ ହାତ ଫୋଲା-ବିନ୍ଧା ହେବା ସଙ୍ଗେ ସଙ୍ଗେ ସାମାନ୍ୟ ଜର ଜର ଲାଗେ । ଇଞ୍ଜେକ୍‌ସନ୍ ନେବା ଜାଗାଟି ସାମାନ୍ୟ ଫୁଲି ଦରଜ ଓ ବିନ୍ଧା ହୁଏ । ଏହି ଟୀକା ଟାଇଫଏଡ଼୍ ରୋଗୀକୁ ପୂରାପୂରି ନିରୋଧ କରୁ ନ ଥିଲେ ମଧ୍ୟ ରୋଗର ଆକ୍ରମଣ ମାତ୍ରାକୁ ବହୁତ ପରିମାଣରେ ହ୍ରାସ କରିଥାଏ ।

## ପ୍ରତିଷେଧକ ବ୍ୟବସ୍ଥା :

ରୋଗୀକୁ ଗୋଟିଏ ଅଲଗା ଘରେ ରଖିବା ଉଚିତ । ତା' ସଙ୍ଗେ ବସାଉଠା, ଖିଆପିଆ କରିବା ଉଚିତ ନୁହେଁ କିମ୍ବା ସେ ବ୍ୟବହାର କରୁଥିବା ଲୁଗାପଟା, ବାସନକୁସନ ଯେପରି ଘରର ଅନ୍ୟମାନେ ବ୍ୟବହାର ନ କରନ୍ତି ସେଥିପ୍ରତି ଦୃଷ୍ଟି ଦେବା ଦରକାର । ରୋଗୀର ଝାଡ଼ା, ପରିସ୍ରା, ବାନ୍ତି, ଛେପ ଓ ଖଙ୍କାର ଇତ୍ୟାଦି ଏଣେତେଣେ ନ ପକାଇ ଗୋଟିଏ ପାତ୍ରରେ ରଖିବା ସଙ୍ଗେ ସଙ୍ଗେ ଏକ ଗାତ ଖୋଳି ଏହାକୁ ପକାଇ ଅଳଆ ସହିତ ମିଶାଇ ପୋଡ଼ିଦେବା ଉଚିତ । ରୋଗୀର ଲୁଗାପଟା ଓ ବାସନ କୁସନ ନଈ କିମ୍ବା ପୋଖରୀରେ ନ ଧୋଇ ଫୁଟା ପାଣିରେ ଘରେ ଧୋଇବା ବିଧେୟ । ରୋଗୀର ଖାଦ୍ୟପଦାର୍ଥ ପ୍ରତି ବିଶେଷ ଦୃଷ୍ଟି ଦେବା ଆବଶ୍ୟକ । ପ୍ରଥମାବସ୍ଥାରେ ରୋଗୀକୁ କ୍ଷୀର, ଫଳରସ, ବାର୍ଲି ଏବଂ ଥଣ୍ଡା ଫୁଟା ପାଣି ପିଇବାକୁ ଦେବା ଉଚିତ । ଦେହର ଉତ୍ତାପ ୧୦୨° ରୁ ଅଧିକ ହେଲେ ଥଣ୍ଡା ପାଣିରେ ମୁଣ୍ଡ ଓ ଦେହ ହାତ ଧୋଇଦେବା ସଙ୍ଗେ ସଙ୍ଗେ ମୁଣ୍ଡରେ ବରଫ କିମ୍ବା ଥଣ୍ଡା ପାଣି ପଟି ଦେଇ ଜ୍ୱର ଯେପରି କମିଯାଏ, ସେଥିପ୍ରତି ଧ୍ୟାନ ଦେବା ଆବଶ୍ୟକ । ଡାକ୍ତରଙ୍କ ପରାମର୍ଶ ଅନୁସାରେ ରୋଗୀକୁ ଉପଯୁକ୍ତ ଔଷଧ ଦେଲେ ଏହି ରୋଗ ଶୀଘ୍ର ଭଲ ହୋଇଯାଏ । ଜ୍ୱର କମିଗଲେ ରୋଗୀକୁ ବିସ୍କୁଟ, ପାଉଁରୁଟି, ଦୋରଖା ଭାତ ଓ ଦରସିଝା ଅଣ୍ଡା ଖାଇବାକୁ ଦେବା ସ୍ୱାସ୍ଥ୍ୟ ପକ୍ଷେ ହିତକର ।

ଏହା ବ୍ୟତୀତ କୌଣସି ସ୍ଥାନରେ ଅଳ୍ପଦିନ ବ୍ୟବଧାନରେ ବହୁତ ଲୋକ ଏହି ରୋଗରେ ଆକ୍ରାନ୍ତ ହେବାର ଦେଖାଗଲେ ସ୍ଥାନୀୟ ସ୍ୱାସ୍ଥ୍ୟ କେନ୍ଦ୍ରରେ ଖବର ଦେବା ସଙ୍ଗେ ସଙ୍ଗେ ପିଲା ତଥା ବୟସ୍କ ଲୋକମାନେ ଟାଇଫଏଡ ଇଂଜେକ୍ସନ ନେବା ଉଚିତ । ଉକ୍ତ ଅଞ୍ଚଳରେ ଥିବା ସମସ୍ତ ଗାଡ଼ିଆ, ପୋଖରୀ ଓ କୂଅ ମାନଙ୍କରେ ବ୍ଲିଚିଂ ପାଉଡ଼ର ପକାଇବା ଦରକାର । ସଦାସର୍ବଦା ପାଣିକୁ ଫୁଟାଇ ଥଣ୍ଡାକରି ପିଇବା ଉଚିତ । ମାଛି ଯେପରି ଖାଦ୍ୟ ପଦାର୍ଥରେ ନ ବସନ୍ତି, ସେଥିପ୍ରତି ଦୃଷ୍ଟି ଦେବା ସଙ୍ଗେ ସଙ୍ଗେ ଗରମ ଓ ଟଟକା ଖାଦ୍ୟ ଖାଇବା ଉଚିତ ।

ଖାଇବା ପୂର୍ବରୁ ହାତକୁ ଭଲ ଭାବରେ ସାବୁନ ଓ ଗରମ ପାଣିରେ ଧୋଇବା ଉଚିତ । ହାଟବଜାର ତଥା ହୋଟେଲରେ ଖାଇବା ତଥା ପାଣି ପିଇବାକୁ ଯେତେଦୂର ଏଡ଼ାଇ ହଅାଯାଇପାରେ ସେଥିପ୍ରତି ସତର୍କତା ଅବଲମ୍ବନ କରିବା ବିଧେୟ । ତେଣୁ ଖାଦ୍ୟ ଓ ପାନୀୟ ପ୍ରତି ଉପଯୁକ୍ତ ଧ୍ୟାନ ଦେଲେ ଏହି ରୋଗ ପ୍ରସାର ଲାଭ କରିପାରେ ନାହିଁ ।

*

# ଆମାଶୟ ବା ଡିସେଣ୍ଟ୍ରି

ଆମ ଦେଶରେ ସାଧାରଣତଃ ଦୁଇପ୍ରକାରର ଆମାଶୟ ରୋଗ ଦେଖାଯାଏ, ଯଥା : ଆମିବିକ ଡିସେଣ୍ଟ୍ରି ଏବଂ ବାସିଲେରି ଡିସେଣ୍ଟ୍ରି । ଏହି ରୋଗ କେତେକ ଜୀବାଣୁ ଦ୍ୱାରା ହୋଇଥାଏ । ବର୍ତ୍ତମାନ ପୃଥିବୀର ପ୍ରାୟ ସବୁ ଦେଶରେ ଏହି ରୋଗ ଦେଖାଯିବା ସଙ୍ଗେ ସଙ୍ଗେ ଜନସ୍ୱାସ୍ଥ୍ୟ ସମସ୍ୟା ରୂପେ ଏହା ବିବେଚିତ । ଭାରତ ବର୍ଷରେ ଶତକଡ଼ା ୧୫ ଭାଗ ଲୋକ ଏହି ରୋଗରେ ଆକ୍ରାନ୍ତ ହେଉଥିଲେ ହେଁ ଅପରିଷ୍କାର ଓ ଆବର୍ଜ୍ଜନା-ପୂର୍ଣ୍ଣ ସ୍ଥାନରେ ଏହା ବିଶେଷ ଭାବରେ ଦେଖାଯାଏ । ବମ୍ବେ, ଲକ୍ଷ୍ନୌ, କଲିକତା, ଅମୃତସର ତଥା କାନପୁର ପ୍ରଭୃତି ସହରରେ ଏହି ରୋଗୀ ମାନଙ୍କ ସଂଖ୍ୟା ବିଶେଷ ଦୃଷ୍ଟିଗୋଚର ହୋଇଥାଏ ।

ଆମାଶୟ ରୋଗର ଜୀବାଣୁ ସାଧାରଣତଃ ରୋଗୀର ଝାଡ଼ା ସହିତ ବାହାରକୁ ଆସିଥାଏ । ଏହି ଜୀବାଣୁ ପାଣି ସମ୍ପର୍କରେ ଆସି ପାନୀୟ ମାଧ୍ୟମରେ ସୁସ୍ଥ ଲୋକଙ୍କୁ ଆକ୍ରମଣ କରିଥାଏ । ଏତଦ୍‌ବ୍ୟତୀତ ରୋଗୀର ନଖ ସନ୍ଧିରେ ଏହି ଜୀବାଣୁମାନେ ଆସି ଖାଦ୍ୟପଦାର୍ଥକୁ ଦୂଷିତ କରିଥାନ୍ତି । ନାଳ ଓ ନର୍ଦ୍ଦମା ପାଖରେ ହୋଇଥିବା ପନିପରିବା କଞ୍ଚା କମ୍ବା ଭଲ ଭାବରେ ନ ସିଝାଇ ଖାଇଲେ ଜୀବାଣୁମାନେ ଦେହ ଭିତରକୁ ପ୍ରବେଶ କରିଥାନ୍ତି । ଏହାଛଡ଼ା ମାଛି ଜୀବାଣୁପୂର୍ଣ୍ଣ

ଝାଡ଼ାରେ ବସିବା ପରେ ଖାଦ୍ୟ ପଦାର୍ଥରେ ବସିବା ଯୋଗୁଁ ଏହାକୁ ଦୂଷିତ କରିଥାଏ ଏବଂ ଦୂଷିତ ଖାଦ୍ୟ ମଧ୍ୟରେ ସୁସ୍ଥ ଲୋକମାନେ ଏହି ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଏହି ରୋଗ ସବୁ ବୟସର ଲୋକଙ୍କୁ ଆକ୍ରମଣ କରିଥାଏ । ସାଧାରଣତଃ ଦରିଦ୍ର, ଅଶିକ୍ଷିତ ଓ ସ୍ୱାସ୍ଥ୍ୟଶିକ୍ଷା ସମ୍ପର୍କରେ ସଚେତନ ନ ଥିବା ସହରତଳି ଓ ମଫସଲ ଅଞ୍ଚଳରେ ବସବାସ କରୁଥିବା ଏବଂ ଖୋଲା ପଡ଼ିଆରେ ଝାଡ଼ା ଯାଉଥିବା ଲୋକମାନେ ଏହି ରୋଗ ଦ୍ୱାରା ବିଶେଷ ଭାବରେ ଆକ୍ରାନ୍ତ ହୋଇଥାନ୍ତି ।

ଥରକୁ ଥର ଝାଡ଼ା ହେବା ଏବଂ ଝାଡ଼ା ସଙ୍ଗେ ସଙ୍ଗେ ପେଟ ଟାଣିବା, ମଳଦ୍ୱାର ବ୍ୟଥା ହେବା ଓ ଗୋଡ଼ ହାତ ଅବଶ ଲାଗିବା ଏହି ରୋଗର ପ୍ରଧାନ ଲକ୍ଷଣ । ଝାଡ଼ାରେ ମଳ ସହିତ ନାଳ ଓ ରକ୍ତ ମଧ୍ୟ ପଡ଼ିଥାଏ । ସାଧାରଣତଃ ଆମିବିକ୍ ଡିସେଣ୍ଟ୍ରିରେ ଅଳ୍ପଥର ଝାଡ଼ା ହେଲେ ମଧ୍ୟ ଝାଡ଼ାରେ ମଳ ପରିମାଣ ବେଶୀ ଥାଏ ଏବଂ ଏହା ନାଳ ଓ ରକ୍ତ ସହିତ ମିଶି ବାହାରକୁ ଆସିଥାଏ । ଝାଡ଼ା ଖଟାଳିଆ ଗନ୍ଧ ହୁଏ । ମାତ୍ର ବେସିଲେରି ଡିସେଣ୍ଟ୍ରିରେ ଘନ ଘନ ଝାଡ଼ା ହୁଏ । ଝାଡ଼ାରେ ମଳର ପରିମାଣ ଅଳ୍ପ ଥାଏ । କଞ୍ଚାରକ୍ତ ଓ ନାଳ ମଳ ସହିତ ନ ମିଶି ପରେ ଅଲଗା ପଡ଼ିଥାଏ । ଦେହରେ ସାମାନ୍ୟ ଜ୍ୱର ରୁହେ । ଆମାଶୟ ଝାଡ଼ା ସାଧାରଣତଃ ୩ ଦିନରୁ ୪ ଦିନ ପର୍ଯ୍ୟନ୍ତ ରହେ । ମାତ୍ର ଉପଯୁକ୍ତ ଚିକିତ୍ସାର ଅଭାବରୁ ଏହି ରୋଗର ଜୀବାଣୁ ବର୍ଷ ବର୍ଷ ଧରି ପେଟ ଭିତରେ ରହିଥାଏ ଏବଂ ମଝେ ମଝେ ବ୍ୟାପକ ଆକାର ଧାରଣ କରି ଲୋକମାନଙ୍କୁ ହଇରାଣ କରିଥାଏ ।

## ପ୍ରତିଷେଧକ ବ୍ୟବସ୍ଥା :

ଖାଦ୍ୟ ଓ ପାନୀୟ ଏହି ରୋଗ ପ୍ରସାରର ମାଧ୍ୟମ ହୋଇଥିବାରୁ ପାଣିକୁ ସର୍ବଦା ଫୁଟାଇ ଥଣ୍ଡା କରି ପିଇବା ଉଚିତ । ଖାଦ୍ୟ ପଦାର୍ଥ ଘୋଡ଼ାଇ ରଖି ଟଟକା ଓ ଉଷୁମ ଅବସ୍ଥାରେ ଖାଇବା ସଙ୍ଗେ ସଙ୍ଗେ ଶୋଚାଇ ଘରର ପରିଷ୍କାର ପରିଚ୍ଛନ୍ନତା ପ୍ରତି ମଧ୍ୟ ବିଶେଷ ଦୃଷ୍ଟି ଦେବା

ବିଧେୟ । ନଳକୂପର ପାଣି ପିଇବା ସ୍ୱାସ୍ଥ୍ୟ ପକ୍ଷରେ ସବୁଠାରୁ ହିତକର । କଞ୍ଚା ଫଳ ଓ ପନିପରିବାକୁ ଭଲ ଭାବରେ ଧୋଇ ଖାଇବା ଦରକାର । ପ୍ରତ୍ୟେକ ଥର ଝାଡ଼ା ଯିବା ପରେ ପରେ ହାତକୁ ମାଟିରେ ନ ଘଷି ସାବୁନ ଓ ପାଣି ବ୍ୟବହାର କରି ଭଲ ଭାବରେ ଧୋଇବା ଉଚିତ । ନଖମୂଳ ଓ ଅଙ୍ଗୁଳି ସନ୍ଧି ପ୍ରତି ବିଶେଷ ଦୃଷ୍ଟି ଦେବା ଦରକାର । କାରଣ ଆମାଶୟ ଜୀବାଣୁ ଏହି ସ୍ଥାନ ମାନଙ୍କରେ ଲାଗି କରି ରହିଥାନ୍ତି । ଖାଦ୍ୟ ପଦାର୍ଥ ଖାଇବା ଆଗରୁ ମଧ୍ୟ ହାତକୁ ଭଲ ଭାବରେ ପରିଷ୍କାର କରିବା ବିଧେୟ । ଖୋଲା ପଡ଼ିଆରେ ଏଣେତେଣେ ଝାଡ଼ା ନ ଯାଇ ଗୋଟିଏ ବଡ଼ ଗାତ ଖୋଳି ସେଥିରେ ଝାଡ଼ାଫେରି ତା ଉପରେ ମାଟି ଘୋଡ଼ାଇ ଦେବା ଉଚିତ, ଫଳରେ ମାଛି ଝାଡ଼ା ଉପରେ ବସି ପାରେନାହିଁ କିମ୍ବା ଖାଦ୍ୟ ପଦାର୍ଥ ଦୂଷିତ ହେବାର ସମ୍ଭାବନା ମଧ୍ୟ କମ୍ ଥାଏ ।

ଏହି ରୋଗରେ ଆକ୍ରାନ୍ତ ହେଉଥିବା ବ୍ୟକ୍ତିକୁ ତୁରନ୍ତ ନିକଟସ୍ଥ ଡାକ୍ତରଖାନାରେ ଥିବା ଡାକ୍ତରଙ୍କ ପରାମର୍ଶ ଅନୁସାରେ ଔଷଧ ଦେବା ବିଧେୟ । ଝାଡ଼ା ହେଉଥିବା ବେଳେ ରୋଗୀକୁ ବାର୍ଲି, ସାଗୁ ପ୍ରଭୃତି ତରଳ ଖାଦ୍ୟ ଖାଇବାକୁ ଦେବା ଉଚିତ । ପେଟରେ ହେଉଥିବା ଯନ୍ତ୍ରଣା ଓ ଦରଜ କମାଇବା ପାଇଁ ଥରକୁ ଥର ଗରମ ପାଣି ସେକ ଦେବା ଦରକାର । ପରିବାରର ଅନ୍ୟ ମାନଙ୍କର ଝାଡ଼ା ପରୀକ୍ଷା କରି ରୋଗର ଜୀବାଣୁ ଥିଲେ ସେମାନଙ୍କୁ ମଧ୍ୟ ଔଷଧ ଖାଇବାକୁ ଦେବା ଉଚିତ । ଏହି ରୋଗର ଜୀବାଣୁ ବହୁତ ବର୍ଷ ପର୍ଯ୍ୟନ୍ତ ଅନ୍ତନଳୀ ମଧ୍ୟରେ ରହି ଯକୃତକୁ ଆକ୍ରମଣ କରିଥାଏ । ତେଣୁ ଝାଡ଼ା ସ୍ୱାଭାବିକ ହେଉଥିଲେ ମଧ୍ୟ ପ୍ରତ୍ୟେକ ୩/୪ ମାସ ବ୍ୟବଧାନରେ ଝାଡ଼ା ପରୀକ୍ଷା କରି ଜୀବାଣୁ ଥିଲେ ଔଷଧ ଖାଇବା ଦରକାର । କଞ୍ଚା ବେଲ ପୋଡ଼ା ଖାଇଲେ ଏହି ରୋଗରେ ସୁଫଳ ମିଳିଥାଏ ।

*

# ତରଳ ଝାଡ଼ା ବା ଡାଇରିଆ

ଯେ କୌଣସି କାରଣରୁ ଅସ୍ୱାଭାବିକ ଭାବରେ ତରଳ କିମ୍ବା ପାଣି ପରି ଝାଡ଼ା ହେଲେ ଏହାକୁ ଡ଼ାଇରିଆ କୁହନ୍ତି । ଆମ ରାଜ୍ୟରେ ଏହା ଏକ ସାଧାରଣ ରୋଗ । ସାଧାରଣତଃ ପିଲାମାନେ ଏହି ରୋଗ-ଦ୍ୱାରା ବିଶେଷ ଭାବରେ ଆକ୍ରାନ୍ତ ହୋଇଥାନ୍ତି । ପ୍ରତିବର୍ଷ ପ୍ରାୟ ୧୫ ଲକ୍ଷ ଶିଶୁ ଏହି ରୋଗଦ୍ୱାରା ମୃତ୍ୟୁ ମୁଖରେ ପଡ଼ନ୍ତି । ଏହି ରୋଗ ସାଧାରଣତଃ ଦୂଷିତ ପାଣି, ଦୂଷିତ ଖାଦ୍ୟ, ବାସି ଖାଦ୍ୟ, ପଚାସଢ଼ା ଫଳମୂଳ, ମାଛି ବସିଥିବା ଖାଦ୍ୟ ପଦାର୍ଥ ଖାଇବା ଯୋଗୁଁ ସୃଷ୍ଟି ହୋଇଥାଏ । ଏତଦ୍‌ବ୍ୟତୀତ ଅପରିଷ୍କାର ହାତରେ ଖାଦ୍ୟ ପଦାର୍ଥ ଖାଇବା ଯୋଗୁଁ ରୋଗ ଜୀବାଣୁ ପେଟ ଭିତରକୁ ଯାଏ ଏବଂ କିଛି ସମୟ ପରେ ତରଳ ଝାଡ଼ା ହେବାକୁ ଆରମ୍ଭ କରେ । ମା' କ୍ଷୀର ପରିବର୍ତ୍ତେ ବଜାରରେ ମିଳୁଥିବା ଗୁଣ୍ଡ ଦୁଗ୍ଧ ବୋତଲରେ ପିଉଥିବା ଶିଶୁମାନଙ୍କ ତରଳ ଝାଡ଼ାର ଅନ୍ୟତମ କାରଣ । ଭଲ ଭାବରେ ପରିଷ୍କାର ହୋଇନଥିବା ବୋତଲ ଓ ରବର ନଳୀରେ ରୋଗ ଜୀବାଣୁ ଖୁବ୍ ଶୀଘ୍ର ବଂଶବୃଦ୍ଧି କରିପାରନ୍ତି ଏବଂ କ୍ଷୀର ସହିତ ଶିଶୁ ପେଟ ଭିତରକୁ ଯାଇ ରୋଗ ଜନ୍ମାନ୍ତି । ଏହାଛଡ଼ା ଘର ପାଖରେ କିମ୍ବା ପୋଖରୀ ହୁଡ଼ା'ରେ ଝାଡ଼ାଗଲେ ଏହା ପରିମଳ ଦୂଷିତ କରିବା ସଙ୍ଗେ ସଙ୍ଗେ ପାଣି ମଧ୍ୟ ଦୂଷିତ କରିଥାଏ । ଦୂଷିତ ପରିବେଶରେ ରୋଗ ଜୀବାଣୁ ସହଜରେ ବଢ଼ି ପାରନ୍ତି ଏବଂ ଖାଦ୍ୟ ତଥା ପାନୀୟ ମାଧ୍ୟମରେ ଦେହ ଭିତରକୁ ଯାଇ ରୋଗ ସୃଷ୍ଟି କରିଥାନ୍ତି ।

ଏହି ରୋଗ ଆରମ୍ଭରେ ରୋଗୀକୁ ଏକାଧିକ ଥର ପତଳା ଝାଡ଼ା ହୁଏ । ଏହି ଝାଡ଼ାରେ ପାଣିର ପରିମାଣ ଅଧିକ ଥାଏ । ଫଳରେ ଜଳ ସହିତ ଲବଣାଂଶ ମଧ୍ୟ ବାହାରିଯାଏ ଏବଂ କ୍ରମେ ଶରୀରରେ ଜଳ-ଶୂନ୍ୟତା ଅବସ୍ଥା ସୃଷ୍ଟି ହୁଏ । ବେଳେ ବେଳେ ଝାଡ଼ା ସହିତ ବାନ୍ତି ହୁଏ । ଦେହର ଉତ୍ତାପ ସାମାନ୍ୟ ବଢ଼ିଯାଏ । ଝାଡ଼ାରେ ଅଳ୍ପ ରକ୍ତ ମଧ୍ୟ ପଡ଼େ । ରୋଗୀ କ୍ରମଶଃ ଦୁର୍ବଳ ହୋଇପଡ଼େ । ପିଲାମାନଙ୍କୁ ପତଳା ଝାଡ଼ା ହେଲେ ଅଳ୍ପ ସମୟ ମଧ୍ୟରେ ପିଲା ନିସ୍ତେଜ ହୋଇଯାଏ । ସବୁବେଳେ

ଶୋଇବାକୁ ଇଚ୍ଛା କରେ । ଆଖି ଶୁଖି ଭିତରକୁ ପଶିଯାଏ ଏବଂ ଆଖିରେ ଲୋତକ ଧାର ନଥାଏ । ଜିଭ ଶୁଖିଯାଏ । ବହୁତ ଶୋଷ ଲାଗେ । ଦେହ ହାତର ଚର୍ମ ଶୁଖି ସେଥିରେ ଖଞ୍ଜ ପଡ଼ିଯାଏ । ପେଟ ଫାମ୍ପି ଯାଏ ।



ଝିଲର ଅଳ୍ପ ପରିସ୍ରା ହୁଏ କିମ୍ବା ଜମାରୁ ପରିସ୍ରା ହୁଏ ନାହିଁ । ଏହା ଏକ ସଙ୍କଟଜନକ ଅବସ୍ଥା ଏବଂ ଆଶୁ ପ୍ରତିକାର କରି ନଗଲେ ରୋଗୀର ଅକାଳ ମୃତ୍ୟୁ ମଧ ଘଟିପାରେ ।

ଏହି ରୋଗର ପ୍ରଥମ ଚିକିତ୍ସା ହେଲା ଦେହରୁ ଯେତିକି ପରିମାଣରେ ପାଣି, ଝାଡ଼ା ସହିତ ବାହାରି ଯାଇଥାଏ, ସେତିକି କିମ୍ବା ତାଠାରୁ ଅଧିକ ପରିମାଣର ପାଣି ଦେହ ଭିତରକୁ ଯେପରି ଯାଏ, ସେଥିପ୍ରତି ଦୃଷ୍ଟି ଦେବା ଦରକାର । ତେଣୁ ଶିଶୁ ମା' କ୍ଷୀର ପିଉଥିଲେ ତାହାର ଇଚ୍ଛାନୁଯାୟୀ କ୍ଷୀର ପିଇବାକୁ ଦେବା ଉଚିତ । ପାଣିକୁ ଫୁଟାଇ ଥଣ୍ଡା କରି ପିଇବାକୁ ଦେବା ଭଲ । ଲେମ୍ବୁ ପାଣି, ପଇଡ଼ପାଣି କିମ୍ବା ଗ୍ଲୁ ଫୁଟା ପାଣି ୫ ମିନିଟରୁ ୧୦ ମିନିଟ ଅନ୍ତରରେ ପିଇବାକୁ ଦେବା ଉଚିତ । ଏହାଛଡ଼ା ଚାରି ଚାମୁଚ ଚିନି ଓ ଅଧ ଚାମୁଚେ ଗୁଣ୍ଡ ଲୁଣକୁ ଅଧ ଲିଟର ବିଶୁଦ୍ଧ ପାଣିରେ ଭଲ ଭାବରେ ଗୋଳାଇ ରୋଗୀକୁ ଥରକୁ ଥର ପିଇବାକୁ ଦେବା ବିଧେୟ । ବର୍ତ୍ତମାନ ବଜାରରେ ମିଳୁଥିବା ଓ. ଆର୍‌. ଏସ୍‌ ଗୁଣ୍ଡ ପୁଡ଼ିଆ ଏକ ଲିଟର ବିଶୁଦ୍ଧ ପାଣିରେ ଚାମୁଚ

ଦ୍ଵାରା ଗୋଳାଇବା ଉଚିତ । ଟେଷ୍ଟ ଛୁଆ ଓ ବଡ଼ ପିଲାମାନଙ୍କୁ ୫ ରୁ ୧୦ ମିନଟ ଅନ୍ତରରେ ୨ ରୁ ୪ ଚାମୁଚ ପାଣୀୟ ଓ ବୟସ୍କମାନଙ୍କୁ ସେମାନଙ୍କ ଇଚ୍ଛା ମୁତାବକ ପିଇବାକୁ ଦେବା ଉଚିତ । ଝାଡ଼ା ବନ୍ଦ ନ ହେଲେ କିମ୍ବା ରୋଗୀର ଅବସ୍ଥାରେ ଅବନତି ଦେଖାଗଲେ ନିକଟସ୍ଥ ସ୍ଵାସ୍ଥ୍ୟ-କେନ୍ଦ୍ରକୁ ସ୍ଥାନାନ୍ତରିତ କରିବା ବିଧେୟ । ସାଧାରଣତଃ ଝାଡ଼ା କମିଯିବା ପରେ ପିଲ ଖାଇବାକୁ ଇଚ୍ଛାକରେ ନାହିଁ । ତେଣୁ ଏକ ସପ୍ତାହ ପର୍ଯ୍ୟନ୍ତ ଅଳ୍ପ ଲେଖାଏଁ ଥରକୁ ଥର ପୁଷ୍ଟିକର ଖାଦ୍ୟ ଖାଇବାକୁ ଦେବା ସ୍ଵାସ୍ଥ୍ୟ ପକ୍ଷରେ ହିତକର ।

## ପ୍ରତିଷେଧକ ବ୍ୟବସ୍ଥା :

ହାତପମ୍ପ କିମ୍ବା ନଳକୂପର ପାଣି ପିଇବା ପାଇଁ ସର୍ବୋତ୍କୃଷ୍ଟ । ତା ନ ହେଲେ ପାଣିକୁ ଭଲ ଭାବରେ ଫୁଟାଇ ଥଣ୍ଡା କରି ପରିଷ୍କାର ପାତ୍ରରେ ଘୋଡ଼ାଇ ରଖି ପିଇବା ଉଚିତ । ପନିପରିବା ଓ ଫଳମୂଳକୁ ଭଲ ଭାବରେ ପାଣିରେ ଧୋଇବା ଉଚିତ । ସର୍ବଦା ଗରମ ତାଟକା ଖାଦ୍ୟ ପଦାର୍ଥ ଖାଇବା ଭଲ । ଖାଦ୍ୟପଦାର୍ଥ ଉପରେ ମାଛି ଯେପରି ବସି ନ ପାରନ୍ତି ସେଥିପାଇଁ ସବୁବେଳେ ଘୋଡ଼ାଇ ରଖିବା ଉଚିତ । ଖାଇବା କିମ୍ବା ରୋଷାଇ କରିବା ପୂର୍ବରୁ ହାତକୁ ଭଲ ଭାବରେ ସାବୁନ ଓ ପାଣି ଦ୍ଵାରା ଧୋଇବା ଉଚିତ । ଝାଡ଼ା ଆସିବା ପରେ ମଧ୍ୟ ହାତକୁ ଭଲ ଭାବରେ ସଫା କରିବା ଆବଶ୍ୟକ । ଶିଶୁ ବ୍ୟବହାର କରୁଥିବା କ୍ଷୀର ବୋତଲ, କପ୍, ଚାମୁଚ ଓ ଗ୍ଲାସକୁ ନିୟମିତ ଭାବରେ ଧୋଇ ଗରମ ପାଣିରେ ଫୁଟାଇ ରଖିବ ଉଚିତ । ପାଇଖାନାରେ ଝାଡ଼ା ଫେରିବା ସର୍ବଦା ବାଞ୍ଛନୀୟ । ପାଇଖାନାରେ ସୁବିଧା ନଥିଲେ ଘର ପାଖରୁ ତଥା ପିଇବା ପାଣି ଥିବା ସ୍ଥାନର ବହୁତ ଦୂରରେ ଝାଡ଼ା ଫେରିସାରି ତାହାକୁ ମାଟି ଦ୍ଵାରା ଘୋଡ଼ାଇ ଦେବା ଉଚିତ ଯେପରି ସେଥିରେ ମାଛି ବସି ନ ପାରନ୍ତି । ଖୋଲା ପଡ଼ିଆ ନ ଥିଲେ ଗୋଟିଏ ବଡ଼ ଗାତ ଖୋଳି ସେହି ଗାତରେ ଝାଡ଼ା ଫେରି ତାହାକୁ ପରେ ଅଳିଆ ଇତ୍ୟାଦି ପୂରାଇ ପୋଡ଼ି ଦେବା ଉଚିତ ।

*

# ପାଳିଜ୍ୱର

ଏହା ଏକ ସଂକ୍ରାମକ ରୋଗ । ପାଳିକରି ଦିନେ ଛଡ଼ା ଦିନେ ବା ପ୍ରତିଦିନ ଏହି ଜ୍ୱର ହେଉଥିବାରୁ ଏହାକୁ ପାଳିଜ୍ୱର କୁହାଯାଏ । ପୃଥିବୀର ଅଧିକାଂଶ ଦେଶରେ ଏହି ରୋଗ ଦେଖା ଯାଉଥିଲେ ମଧ୍ୟ ଭାରତ, ପାକିସ୍ଥାନ ଓ ଶ୍ରୀଲଙ୍କାରେ ଏହା ବିଶେଷ ଭାବରେ ଦେଖାଯାଏ ।

ଏହି ରୋଗ ସାଧାରଣତଃ ୪ପ୍ରକାରର ମ୍ୟାଲେରିଆ କୀଟାଣୁ ଦ୍ୱାରା ହୋଇଥାଏ ଏବଂ ମାଇ ଆନୋଫେଲିସ୍ ମଶା ଦ୍ୱାରା କୀଟାଣୁ ଗୁଡ଼ିକ ରୋଗୀ ଠାରୁ ସୁସ୍ଥ ଲୋକ ରକ୍ତକୁ ଯାଆନ୍ତି । ପ୍ରଥମେ ଏହା ସୁସ୍ଥ ଲୋକର ରକ୍ତରୁ ଯାଇ ଯକୃତରେ ପହଞ୍ଚି ସେଠାରେ ୭ଦିନରୁ ୮ଦିନ ଭିତରେ ବଢ଼ି ପୁଣି ରକ୍ତ ସଞ୍ଚାଳନ ମଧ୍ୟକୁ ଆସି ରକ୍ତ କଣିକା ଭିତରକୁ ଯାଆନ୍ତି । ରକ୍ତ କଣିକା ଭିତରେ ବୃଦ୍ଧି ପାଇ ଏମାନେ ମାଈ ଓ ଅଣ୍ଡିରା କୀଟାଣୁରେ ବିଭକ୍ତ ହୋଇଥାନ୍ତି । ମାଈ ମଶା ରୋଗୀକୁ କାମୁଡ଼ିଲା ବେଳେ ଯେଉଁ ରକ୍ତ ଶୋଷିଥାଆନ୍ତି ସେଥିରେ ଉଭୟ ମାଈ ଓ ଅଣ୍ଡିରା କୀଟାଣୁ ଥାଆନ୍ତି । ମଶା ପେଟ ଭିତରେ ଏମାନେ ରକ୍ତକଣିକା ଭିତରୁ ବାହାରି ବଂଶ ବୃଦ୍ଧି କରିଥାଆନ୍ତି । ମଶା ପେଟ ଭିତରୁ ବାହାରକୁ ଆସି କେତେକ ମଶାର ମୁହଁ ପାଖରେ ଆସି ପହଞ୍ଚନ୍ତି । ଯେତେବେଳେ ଏହି ମଶା ସୁସ୍ଥ ଲୋକକୁ କାମୁଡ଼େ, ଏହି ନୂଆ କୀଟାଣୁ ମାନେ ମନୁଷ୍ୟ ରକ୍ତ ମଧ୍ୟକୁ ଆସି ରୋଗ ସୃଷ୍ଟି କରିଥାନ୍ତି । ଏହି ରୋଗ ଯେ କୌଣସି ବୟସର ଲୋକମାନଙ୍କୁ ଆକ୍ରମଣ କରୁଥିଲେ ହେଁ, ଶିଶୁମାନଙ୍କ ପାଖରେ ଏହା ପ୍ରାୟ ଦେଖାଯାଏ ନାହିଁ । ଏହି ରୋଗର କୀଟାଣୁ ପାଖ ୩୦ ବର୍ଷ ପର୍ଯ୍ୟନ୍ତ ଦେହ ଭିତରେ ରହିଥାଏ । ଯେତେବେଳେ ରୋଗୀ ଥରକୁ ଥର ମ୍ୟାଲେରିଆ ରୋଗରେ ଆକ୍ରାନ୍ତ ହୋଇଥାଏ । ଏହି ରୋଗ ବର୍ଷର ସବୁ ସମୟରେ ଦେଖାଯାଉଥିଲେ ମଧ୍ୟ ଜୁଲାଇ ଓ ନଭେମ୍ବର ମାସରେ ଏହାର ପାଦୁର୍ଭାବ ଅଧିକ ।

ଏହି ରୋଗର ପ୍ରଧାନ ଲକ୍ଷଣ ହେଲା ଭୟଙ୍କର ଜ୍ୱର, ଶୀତ ଓ କମ୍ପ । ଏହି ଜ୍ୱର ସାଧାରଣତଃ ଦିନେ ଛଡ଼ା ଦିନେ, ଦୁଇଦିନ ଛଡ଼ା ଦିନେ କିମ୍ବା ପ୍ରତିଦିନ ପାଳିକରି ହୋଇଥାଏ । ଜ୍ୱର ହେବା ସଙ୍ଗେ ସଙ୍ଗେ ବାନ୍ତି, ମୁଣ୍ଡବ୍ୟଥା ପ୍ରଭୃତି ଦେଖାଯାଏ ଏବଂ ଦେହରୁ ଗୁନ୍ଥାଏ ଝାଳ ବାହାରି ଜ୍ୱରର ଉତ୍ତାପ କମିଯାଏ ଏବଂ ରୋଗୀ ସ୍ୱାଭାବିକ ଅବସ୍ଥାକୁ ଫେରିଆସେ । ଏହି ରୋଗର ଜୀବାଣୁ ମସ୍ତିଷ୍କକୁ ଆକ୍ରମଣ କଲେ ରୋଗୀ ଅଚେତ ହୋଇପଡ଼େ ଏବଂ ସମୟ ସମୟରେ ମୃତ୍ୟୁବରଣ ମଧ୍ୟ କରିଥାଏ । ବାରମ୍ବାର ପାଳିଜ୍ୱରରେ ଆକ୍ରାନ୍ତ ହେଲେ ପ୍ଲିହା ବଢ଼ିଯାଏ, ରକ୍ତ-ହୀନତା ଘଟେ ଏବଂ ରୋଗୀ ବହୁତ ଦୁର୍ବଳ ହୋଇଯାଏ । ଜ୍ୱର ଥିଲା-ବେଳେ ରୋଗୀର ଦେହ ଓ ମୁଣ୍ଡକୁ ଥଣ୍ଡା ପାଣିରେ ଭଲ ଭାବରେ ଧୋଇ ପୋଛି ଦେବା ଦରକାର । ରୋଗୀକୁ ପାଣି, ଲେମ୍ବୁରସ, କ୍ଷୀର ଓ ବାର୍ଲି ପ୍ରଭୃତି ପିଇବାକୁ ଦେବା ଦରକାର । ଜ୍ୱର ପୁରାପୁରି ଭଲ ହୋଇଯିବା ପରେ ଭାତ ଓ ତରକାରୀ ଦେବା ଉଚିତ ।

## ପ୍ରତିଷେଧକ ବ୍ୟବସ୍ଥା :

ମଶା ଏହି ରୋଗର ପ୍ରଧାନ କାରଣ ହୋଇଥିବାରୁ ଶୋଇବା ସମୟରେ ମଶାରି ଟାଙ୍ଗି ଶୋଇବା ଉଚିତ । ଘର ଚାରିପାଖରେ ଥିବା ଛୋଟ ଛୋଟ ବୁଦା, ଭଙ୍ଗା ହାଣ୍ଡି ଓ ମାଠିଆ ଇତ୍ୟାଦି ସଫା କରିଦେଲେ ସେଥିରେ ଜମିଥିବା ପାଣିରେ ମଶା ଡିମ୍ବ ଦେଇ ବଂଶବୃଦ୍ଧି କରିପାରନ୍ତି ନାହିଁ । ଘର ଭିତରେ, ଅଳିଆ ଗଦା, ଗୋବର ଖାତ, ଗାଡ଼ିଆ ଓ ନର୍ଦ୍ଦମାମାନଙ୍କରେ ଜୀବାଣୁନାଶକ ଡି.ଡି.ଟି ନିୟମିତ ପକାଇବା ଦ୍ୱାରା ମଶା ବଂଶ ଲୋପ ପାଇଥାଏ । କୌଣସି ଅଞ୍ଚଳରେ ବହୁତ ଲୋକ ଏକସମୟରେ ଏହି ରୋଗ ଦ୍ୱାରା ଆକ୍ରାନ୍ତ ହେବାର ଦେଖାଗଲେ ସେଠାରେ ବସବାସ କରୁଥିବା ଲୋକ-ମାନଙ୍କର ରକ୍ତ ପରୀକ୍ଷା କରି ଡାକ୍ତରଙ୍କ ପରାମର୍ଶ ଅନୁସାରେ ଔଷଧ ଖାଇବା ଦରକାର । ଆମ ଦେଶରେ ମ୍ୟାଲେରିଆ ରୋଗ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ମୃତ୍ୟୁହାର ଅଧିକ ହେବାରୁ ଜାତୀୟ ମ୍ୟାଲେରିଆ ନିରା-କରଣ ଯୋଜନା ମାଧ୍ୟମରେ ବିନା ପଇସାରେ ପ୍ରତ୍ୟେକ ଘରେ ବର୍ଷକୁ

୨ଥର କରି ଡ଼.ଡ଼.ଟି. ପକାଇବା ଏବଂ ଉପଯୁକ୍ତ ଔଷଧ ଦେବାର ବ୍ୟବସ୍ଥା ହୋଇଥିଲେ ମଧ୍ୟ ନାଳନନ୍ଦ୍ମାର ଅବ୍ୟବସ୍ଥା; ଜନ ସଂଖ୍ୟା ବୃଦ୍ଧି ତଥା ଜନସାଧାରଣଙ୍କ ସହଯୋଗ ଅଭାବରୁ ଏହି ରୋଗ ପ୍ରତ୍ୟେକ ଅଞ୍ଚଳରେ ଭଣା ଅଧିକେ ଦେଖାଯାଉଛି ।

*

# ବାତଜ୍ୱର

ଏହି ଜ୍ୱର ଏକ ସୂକ୍ଷ୍ମ କୀଟାଣୁ ଦ୍ୱାରା ଜାତ ହୁଏ । ଏହା ଭାରତବର୍ଷର ସମୁଦ୍ରପାଖ ଉପକୂଳ ଅଞ୍ଚଳ ମାନଙ୍କରେ ବିଶେଷ ଭାବେ ଦେଖାଯାଏ । ଆମ ରାଜ୍ୟର ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାର ଲୋକମାନେ ଏହି ରୋଗ ଦ୍ୱାରା ବହୁଳ ଭାବରେ ଆକ୍ରାନ୍ତ ହୋଇଥାନ୍ତି । ଏହା ୨ ବର୍ଷରୁ ପିଲାଠାରୁ ଆରମ୍ଭ କରି ୬୦ ବର୍ଷ ବୟସର ଲୋକଙ୍କୁ ଆକ୍ରମଣ କରିଥିଲେ ହେଁ ୨୦ ବର୍ଷରୁ ୩୦ ବର୍ଷ ବୟସର ରୋଗୀଙ୍କ ସଂଖ୍ୟା ଅଧିକ ।

ମାଈ କ୍ୟୁଲେକ୍ସ ମଶା ରୋଗୀକୁ କାମୁଡ଼ି ରକ୍ତ ଶୋଷିଲା ବେଳେ ରକ୍ତ ସଙ୍ଗେ ଛୋଟ ଛୋଟ କୀଟାଣୁ ମାନଙ୍କୁ ମଧ୍ୟ ଶୋଷିନିଏ । ମଶାଙ୍କ ପେଟ ଭିତରେ ଏହି କୀଟାଣୁ ଗୁଡ଼ିକ ବଢ଼ି ରୋଗ ଜନ୍ମାଇବାର ଶକ୍ତି ଲାଭ କରନ୍ତି । ଏହି କୀଟାଣୁପୂର୍ଣ୍ଣ ମାଈ ମଶା ଯେତେବେଳେ ସୁସ୍ଥ ଲୋକକୁ କାମୁଡ଼େ, ଏହି କୀଟାଣୁମାନେ ସୁସ୍ଥ ଲୋକଙ୍କ ରକ୍ତ ଭିତରକୁ ପ୍ରବେଶ କରନ୍ତି । ପରେ ସେମାନେ ଦେହ ଭିତରେ ଥିବା ଲସିକାନଳୀ ଓ ଗ୍ରନ୍ଥି ମଧ୍ୟକୁ ପ୍ରବେଶ କରି ସେଠାରେ ବଂଶ ବୃଦ୍ଧି କରନ୍ତି । ସମସ୍ତ ସମୟରେ ଛୁଆ କୀଟାଣୁମାନେ ରକ୍ତ ସଞ୍ଚାଳନରେ ବୁଲିବୁଲନ୍ତି ଏବଂ

ରାତ୍ରିରେ ଶୋଇଥିଲା ବେଳେ ରକ୍ତ ପରୀକ୍ଷା କଲେ ଏହା ଜଣାପଡ଼ିଥାଏ । ଦେହ ଭିତରେ ଏହି ଜୀବାଣୁ ଅନେକ ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହନ୍ତି ।



ଏହି ରୋଗ ବିଶେଷ ଭୟଙ୍କର ନ ହେଲେ ମଧ୍ୟ ରୋଗୀକୁ ସାମୟିକ ଜ୍ୱର ହୁଏ ଏବଂ ଏହି ଜ୍ୱର ଅମାବାସ୍ୟା ଓ ପୂର୍ଣ୍ଣିମା ତିଥି ପାଖାପାଖି ଦିନ ମାନଙ୍କରେ ପ୍ରାୟ ଦେଖାଯାଏ । ଜ୍ୱର ହେବା ସଙ୍ଗେ ସଙ୍ଗେ ମୁଣ୍ଡ ବଥାଏ, ଗୋଡ଼ହାତ ଫୋଲାବିନ୍ଧା ହୁଏ ଏବଂ ଦୁଇ ତିନିଦିନ ମଧ୍ୟରେ ଜ୍ୱର ଭଲ ହୋଇଯାଏ । ରୋଗୀକୁ ଏହିପରି ମାସେ କିମ୍ବା ଦୁଇମାସ ବ୍ୟବଧାନରେ ଜ୍ୱର ହୁଏ । ଏହି ଜ୍ୱର ପାଞ୍ଚ ଦଶଥର ହେବା ପରେ ଲସିକା ନଳୀ ଓ ଗ୍ରନ୍ଥି ଗୁଡ଼ିକ ଫୁଲି ଦରଜ ହୁଏ । ଗୋଡ଼ ହାତ ଫୁଲି ଯାଏ । ଏହି ଜ୍ୱର କ୍ରମାଗତ ବର୍ଷେ କିମ୍ବା ଦୁଇବର୍ଷ ହେଲେ ଗୋଡ଼ କିମ୍ବା ହାତରେ ଚର୍ମ ଓ ଚର୍ମତଳୁର ବୃଦ୍ଧି ହୋଇ ମୋଟା ଦେଖାଯାଏ ଏବଂ ଶାରୀରିକ କାର୍ଯ୍ୟ କରିବାକୁ ସେ ଅକ୍ଷମ ହୁଏ । ଫଳରେ ରେଗୀ ସମାଜରେ ନିଜକୁ ଅସହାୟ ମନେକରେ ଏବଂ ଅନ୍ୟମାନଙ୍କ ସହିତ ମିଳାମିଶା କରିବାକୁ ଇଚ୍ଛା କରେ ନାହିଁ ।

କୌଣସି ଲୋକକୁ ଏହି ପାଳିଜ୍ୱର ହେବାର ଅନୁମାନ ହେଲେ ତାହାକୁ ଗୋଟିଏ ଅଲଗା ଘରେ ମଶାରି ବାନ୍ଧି ଶୁଆଇବା ଉଚିତ । ଜ୍ୱର କମିବା ପାଇଁ ମୁଣ୍ଡ ଓ ଦେହ ହାତ ଥଣ୍ଡା ପାଣିରେ ଭଲକରି

ଧୋଇ ପୋଛିଦେବା ଦରକାର । ଡ଼ାକ୍ତରଙ୍କ ପରାମର୍ଶ ଅନୁସାରେ ଏକ-ବର୍ଷରୁ ଦୁଇବର୍ଷ ପର୍ଯ୍ୟନ୍ତ କିଛି ମାସ ବ୍ୟବଧାନରେ ଏହି ରୋଗର ଔଷଧ ଖାଇଲେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିବାର ସମ୍ଭାବନା ଅଧିକ ଥାଏ । ନଚେତ୍ ଏହି ଜ୍ୱର ବର୍ଷର ସମସ୍ତ ସମୟରେ ଅନିୟମିତ ଭାବରେ ହେବା ସଙ୍ଗେ ସଙ୍ଗେ ଗୋଡ଼ ହାତ ଫୁଲି ଏପରି ମୋଟା ହୋଇଯାଏ ଯେ ତାହା ହାତୀର ଗୋଡ଼ ଭଳି ଦେଖାଯାଏ । ବେଳେବେଳେ ପରିସ୍ରା ଧଳା ରଙ୍ଗ ଦେଖାଯିବା ସଙ୍ଗେ ସଙ୍ଗେ ଶରୀରରେ ଅନେକ ପ୍ରକାରର ରୋଗ ସୃଷ୍ଟି କରିଥାଏ ।

## ପ୍ରତିଷେଧକ ବ୍ୟବସ୍ଥା :

ମଶା ଏହି ରୋଗର ପ୍ରଧାନ କାରଣ ହୋଇଥିବାରୁ ମଶା କାମୁଡ଼ାରୁ ରକ୍ଷା ପାଇବା ପାଇଁ ମଶାରି ବ୍ୟବହାର କରିବା ଉଚିତ । ରୋଗୀ ଶୋଇବା ଘରେ ଅନ୍ୟ କେହି ଶୋଇବା ଉଚିତ ନୁହେଁ । ଘର ପାଖରେ ଥିବା ଅଳିଆଗଦା, ନର୍ଦ୍ଦମା, ନାଳ, ଅପରିଷ୍କାର ପୋଖରୀ ଇତ୍ୟାଦି ସଫା କରି କୀଟାଣୁ ନାଶକ ଔଷଧ ଡ଼ି.ଡ଼ି.ଟି ପକାଇବା ଦ୍ୱାରା ମଶା ତଥା ଅଣ୍ଡା ଗୁଡ଼ିକ ସହଜରେ ନଷ୍ଟ ହୋଇଥାନ୍ତି । ଘରର ଝରକା କବାଟ ବନ୍ଦକରି ସନ୍ଧ୍ୟାବେଳେ ନିୟମିତ ଝୁଣା ଧୂଆଁ ଦେଲେ ମଶା ହାତରୁ ମଧ୍ୟ ରକ୍ଷା ମିଳିଥାଏ । ବର୍ତ୍ତମାନ ଆମ ଦେଶରେ ଜାତୀୟ ଫାଇଲେରିଆ ନିରାକରଣ ଯୋଜନା ପ୍ରସ୍ତୁତ କରାଯାଇ ମଶା ମାରିବା ପାଇଁ ପ୍ରତି ସପ୍ତାହରେ ନାଳ ନର୍ଦ୍ଦମାରେ ତେଲ ପକାଯିବାର ବନ୍ଦୋ-ବସ୍ତ କରାଯିବା ସଙ୍ଗେସଙ୍ଗେ ଲୋକଙ୍କ ରକ୍ତ ପରୀକ୍ଷା କରାଯାଇ ବିନା ପଇସାରେ ଔଷଧ ଯୋଗାଇ ଦିଆଯାଉଛି । ମାତ୍ର ଜନସାଧାରଣଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ଉପଯୁକ୍ତ ବାସଗୃହର ଅଭାବ, ନାଳନର୍ଦ୍ଦମାର ଅବ୍ୟବସ୍ଥା, ମଶାରିର ଅଭାବ ଏହି ରୋଗ ନିରାକରଣରେ ବାଧା ସୃଷ୍ଟି କରିବା ଯୋଗୁଁ ବହୁତ ଲୋକ ଏହି ରୋଗରେ ଆକ୍ରାନ୍ତ ହେଉଛନ୍ତି ।

*

# ଅଙ୍କୁଶ କୃମି ବା ହୁକ ୱାର୍ମ

ଏହି କୃମି ଦେଖିବାକୁ ଅଙ୍କୁଶ ପରି । ଏହାର ମୁହଁଟି ବଙ୍କା ଓ ଏଥିରେ ଗୁଡ଼ିଏ ଦାନ୍ତ ଥାଏ । ଏହି କୃମିର ଛୁଆ ଗୁଡ଼ିକ ଖାଲି ପାଦରେ ଯିବା ଆସିବା କରୁଥିବା ଲୋକମାନଙ୍କର ପାଦ ବାଟେ ଦେଇ ଦେହ ଭିତରକୁ ପ୍ରବେଶ କରି ରକ୍ତ ସଞ୍ଚାଳନ ଦ୍ୱାରା ଫୁସ୍‌ଫୁସ୍‌କୁ ଯାଆନ୍ତି । ଫୁସ୍‌ଫୁସରୁ ବାୟୁନଳୀ ଭିତରକୁ ଆସି ଖଙ୍କାରବାଟେ ଶ୍ୱାସ-



ନଳୀ ମାଧ୍ୟମରେ ଉପରକୁ ଉଠି ତଣ୍ଟି ପାଖରେ ପହଞ୍ଚନ୍ତି । ପରେ ଖାଦ୍ୟ ସହିତ ମିଶି ଖାଦ୍ୟନଳୀ ଭିତରକୁ ପ୍ରବେଶ କରି ଅନ୍ତ୍ରନଳୀର ଉପର ଭାଗରେ ରହନ୍ତି । ଏଠାରେ ସେମାନେ ବଡ଼ ହୋଇ ଅନ୍ତ୍ରନଳୀକୁ ମୁହଁରେ ଥିବା ଦାନ୍ତଦ୍ୱାରା କାମୁଡ଼ି ଧରି ରହିଥାନ୍ତି ଏବଂ ରକ୍ତ ଶୋଷି ବଞ୍ଚନ୍ତି । ଏହି କୃମି ରୋଗ ଛୋଟ ପିଲାଠାରୁ ଆରମ୍ଭ କରି ବଡ଼ ଲୋକ-ମାନଙ୍କ ପାଖରେ ମଧ୍ୟ ଦେଖାଯାଏ ।

ଅଙ୍କୁଶ କୃମି ବଡ଼ ହେବାପରେ ଅନ୍ତ୍ରନଳୀରେ ରହି ଡିମ୍ବ ଦିଏ । ଡିମ୍ବ ଗୁଡ଼ିକ ରୋଗୀର ଝାଡ଼ାରେ ବାହାରକୁ ଆସେ । ରୋଗୀର ଝାଡ଼ା ପଡ଼ିଆରେ ପଡ଼ି ରହିଥିବା ବେଳେ ଡିମ୍ବଗୁଡ଼ିକ ଛୁଆରେ ପରିଣତ ହୁଏ । ଏହି ସବୁ ସ୍ଥାନମାନଙ୍କରେ ଖାଲି ପାଦରେ ଚଲାବୁଲା କରିବା ବେଳେ ଛୁଆ ଗୁଡ଼ିକ ପାଦର ଚର୍ମ ଫୁଟାଇ ରକ୍ତ ମଧ୍ୟକୁ ପ୍ରବେଶ କରିଥାନ୍ତି ।

ବେଳେବେଳେ ଏହି ଛୁଆ ଗୁଡ଼ିକ ପିଇବା ପାଣି ସହିତ ମିଶି ସହଜରେ ପେଟ ଭିତରକୁ ଯାଇ ପାରନ୍ତି ।

ଏହି ରୋଗର ପ୍ରଧାନ ଲକ୍ଷଣ ହେଲା ରକ୍ତହୀନତା ଓ ଦୁର୍ବଳତା । କୃମି ଗୁଡ଼ିକ ଅନ୍ତନଳୀରୁ ରକ୍ତଶୋଷି ଖାଉଥିବା ଫଳରେ ଝାଡ଼ା ସହିତ ରକ୍ତ ମିଶିଥିବାରୁ ଏହାର ରଙ୍ଗ ବେଳେବେଳେ ପିଚୁ ପରି କଳା ହୋଇ-ଥାଏ । ଏହା ବ୍ୟତୀତ ପେଟ କ ମୁଡ଼ିବା, ଖାଦ୍ୟ ପଦାର୍ଥ ହଜମ ନ ହେବା, ଭୋକ ନ ଲାଗିବା ଏବଂ ସମୟ ସମୟରେ ତରଳ ଝାଡ଼ା ହେବା ଇତ୍ୟାଦି ରୋଗୀ ଠାରେ ଦେଖାଯାଏ । ରକ୍ତହୀନତା ଫଳରେ ଦେହର ରଙ୍ଗ ଶ୍ୱେତ ଦେଖାଯାଏ ଏବଂ ମୁହଁ ଓ ଗୋଡ଼ ଫୁଲିଯାଏ । ରୋଗୀ ବହୁତ ଦୁର୍ବଳ ହୋଇଯାଏ ଏବଂ ଅଳ୍ପକିଛି କାମ କଲାପରେ ବହୁତ ହାଲିଆ ହୋଇପଡ଼େ । ଅଣନିଶ୍ୱାସୀ ଲାଗିବା ସଙ୍ଗେ ସଙ୍ଗେ ହୃତପିଣ୍ଡର ଗତି ମଧ୍ୟ ବଢ଼ିଯାଏ ।

**ପ୍ରତିଷେଧକ ବ୍ୟବସ୍ଥା :**

ଖୋଲା ପଡ଼ିଆ ବା ବିଲରେ ଝାଡ଼ା ଫେରିବା ଉଚିତ ନୁହେଁ । ସାଧାରଣ ଲୋକେ ଝାଡ଼ା ଫେରୁଥିବା ପଡ଼ିଆକୁ ଖାଲି ପାଦରେ ନ ଯାଇ ପାଦକୁ ଘୋଡ଼ାଇ ରଖୁଥିବା ଭଳି ଜୋତାମାଡ଼ି ଯିବା ଉଚିତ । ଆଜି-କାଲି ବଜାରରେ ମିଳୁଥିବା ରବର ପ୍ଲାଷ୍ଟିକ ବା ସ୍ପଞ୍ଜ ଚପଲ ବିଶେଷ ଉପକାରୀ ନୁହେଁ । କାରଣ ଏହା ଭିତରେ ବାଲି ସହଜରେ ପଶିଯାଏ ଏବଂ ପାଦତଳ ଚର୍ମକୁ କଣାକରି କୃମି ପୋକର ଛୁଆ ଗୁଡ଼ିକ ଦେହ ଭିତରକୁ ପଶି ପାରନ୍ତି । ସବୁବେଳେ ପାଇଖାନାକୁ ଜୋତା ପିନ୍ଧି ଝାଡ଼ା ଯିବା ଉଚିତ । ଗାଁ ମାନଙ୍କରେ ପାଇଖାନା ତିଆରି କରିବାର ସୁବିଧା ନ ଥିଲେ ଘରଠାରୁ ଦୂରରେ ଗୋଟିଏ ଗାତ ଖୋଳି ସେଥିରେ ପରିବାରର ସମସ୍ତେ ଝାଡ଼ା ଯିବା ଉଚିତ । ଏହି ଗାତ ପୂର୍ଣ୍ଣ ହୋଇଗଲେ ଅଳିଆ ଓ ମାଟି ଦେଇ ଏହାକୁ ବନ୍ଦ କରି ଅନ୍ୟ ଏକ ଗାତ ଖୋଳିବା ଦରକାର । ପରେ ଏହାକୁ ଖତ ରୂପେ ବିଲବାଡ଼ିରେ ମଧ୍ୟ ବ୍ୟବହାର କରାଯାଇ ପାରେ । ନଳକୂପର ପାଣି ପିଇବା ପାଇଁ ସର୍ବୋତ୍କୃଷ୍ଟ । ନଳ-କୂପ ଅଭାବରୁ ପାଣିକୁ ଫୁଟାଇ ଥଣ୍ଡାକରି ପିଇବା ଉଚିତ । ଏହାଛଡ଼ା ପାଦରେ ପ୍ରତ୍ୟେକ ଦିନ ତେଲ ଲଗାଇଲେ ଏହି କୃମିର ଛୁଆ ଗୁଡ଼ିକ

ପାଦରେ ଚଢ଼ି ପାରନ୍ତି ନାହିଁ । ବାହାରୁ କୁଳକୁଳ କରି ଆସିଲେ ପରେ ଗରମ ପାଣିରେ ଗୋଡ ଧୋଇଲେ କୃମିର ଛୁଆ ଗୁଡ଼ିକ ମଧ୍ଯ ମରିଯାଆନ୍ତି । ଏହି ରୋଗର ଲକ୍ଷଣ ଦେଖାଯିବା ମାତ୍ରେ ରୋଗୀର ଝାଡ଼ା ପରୀକ୍ଷା କରି ଡ଼ାକ୍ତରଙ୍କ ପରାମର୍ଶ ଅନୁସାରେ ଔଷଧ ଖାଇବା ଦରକାର । ଔଷଧ ଖାଇବାର ୧୫ ଦିନ ପରେ ଆଉଥରେ ଝାଡ଼ା ପରୀକ୍ଷା କରି ଡ଼ିମ୍ବ ଥିଲେ ଔଷଧ ଖାଇବା ଭଲ । ଏହା ଛଡ଼ା ପରିଷ୍କାର ପରିଚ୍ଛନ୍ନତା ମଧ୍ଯ ଏହି ରୋଗକୁ କେତେକାଂଶରେ କମାଇ ପାରିଥାଏ ।

*

# ଜିଆ ବା କେଞ୍ଚୁଆ

ଏହି କୃମି ଦେଖିବାକୁ ଅବିକଳ ମାଟି ଭିତରେ ଥିବା ଜିଆ ପରି । ମାତ୍ର ଏହା ଟିକିଏ ବେଶୀ ମୋଟା, ଲମ୍ବ ଓ ଶ୍ୱେତରଙ୍ଗବିଶିଷ୍ଟ । ଏମାନେ ସାଧାରଣତଃ ଅନ୍ତ୍ରନଳୀର ଉପର ଭାଗରେ ରହିଥାନ୍ତି । କିନ୍ତୁ ବେଳେବେଳେ ପାକସ୍ଥଳୀ ଭିତରକୁ ଆସି ବାନ୍ତି ମାଧ୍ଯମରେ ପାଟିବାଟେ ପଦାକୁ ଆସନ୍ତି । ସମସ୍ତ ସମୟରେ ପାଟି ବାଟେ ନ ବାହାରି ଶ୍ୱାସନଳୀ ମଧ୍ଯ ଦେଇ ନାକ ଭିତରକୁ ଆସି ବହୁତ କଷ୍ଟ ଦିଅନ୍ତି । ଛୋଟ ପିଲାଙ୍କ ନାକ କିମ୍ବା ଗଳା ନଳୀରେ ପଶିଗଲେ ନିଶ୍ୱାସ ବନ୍ଦ ହୋଇ ପିଲାର ପ୍ରାଣ ପର୍ଯ୍ୟନ୍ତ ଯିବାର ସମ୍ଭାବନା ଥାଏ । ଅନ୍ତ୍ରନଳୀ ମଧ୍ଯରେ ଥିବାବେଳେ କୃମି ଗୁଡ଼ିକ ଡ଼ିମ୍ବ ଦେଇ ବଂଶ ବୃଦ୍ଧି କରିଥାଆନ୍ତି ।

ଡ଼ିମ୍ବ ଗୁଡ଼ିକ ଝାଡ଼ା ସହିତ ମିଶି ପଦାକୁ ବାହାରି ଆସିଲା ପରେ ଯଦି କୌଣସି ଉପାୟରେ ପାଣି ସହିତ ମିଶିଯାଏ ଏବଂ ଏହି ଦୂଷିତ ପାଣି ଯଦି ସୁସ୍ଥ ଲୋକ ପିଅନ୍ତି ତେବେ ସେମାନେ ଏହି ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଏହାଛଡ଼ା ରୋଗୀ ବଲବାଡ଼ିରେ ଝାଡ଼ା ଫେରିଲେ ସେହି ଡ଼ିମ୍ବ ଗୁଡ଼ିକ ମାଟିରେ ମିଶି ରହିଥାଆନ୍ତି । ପରେ ସେହି ସ୍ଥାନରେ ହେଉଥିବା ଫଳମୂଳ ଯଥା ମୂଳା, କାକୁଡ଼ି ଓ ବିଲାତି ବାଇଗଣ ଇତ୍ୟାଦି ଭଲ ଭାବରେ ନ ଧୋଇ କଞ୍ଚା ଖାଇଲେ ଏହି ରୋଗ ହେବାର ସମ୍ଭାବନା

ଥାଏ । ଏହି କୃମି ପିଲାଠାରୁ ଆରମ୍ଭ କରି ବୃଦ୍ଧ ପର୍ଯ୍ୟନ୍ତ ଯେ କୌଣସି ବୟସର ଲୋକମାନଙ୍କୁ ଆକ୍ରମଣ କରିଥାଏ ।

ପ୍ରଥମରେ ଏହି ରୋଗ ଦ୍ୱାରା ସ୍ୱାସ୍ଥ୍ୟର ବିଶେଷ କିଛି ଅସୁବିଧା ଜଣାପଡ଼େ ନାହିଁ । ଅନ୍ତନଳୀରେ ଏହି କଅା ଗୁଡ଼ିକ ବଂଶ ବୃଦ୍ଧି କଲା-ପରେ ପତଳା ଝାଡ଼ା ଓ ବାନ୍ତି ଇତ୍ୟାଦି ଲକ୍ଷଣ ଦେଖାଯାଏ । ସମୟ ସମୟରେ ପେଟ ବହୁତ ବଥା ହୁଏ । ଫାର୍ମି ଯାଏ, କିନ୍ତୁ ଖାଇବାକୁ ଇଚ୍ଛା ହୁଏନାହିଁ । ଏହି ସମୟରେ କଅା, ଝାଡ଼ା ତଥା ବାନ୍ତି ଦ୍ୱାରା ପଦାକୁ ବାହାରି ଆସେ । ପିଲାମାନଙ୍କୁ ଏହି ରୋଗ ଆକ୍ରାନ୍ତ କଲେ ରାତିରେ ଶୋଇ ଥିଲାବେଳେ ଦାନ୍ତ ରଗଡ଼େ ଓ ବିଳିବିଳାଏ । ନାକର ଅଗ୍ରଭାଗ କୁଣ୍ଡାଇ ହୁଏ । ଭଲ ଭାବରେ ଭୋକ ନ ଲାଗିବା ସଙ୍ଗେ ସଙ୍ଗେ ଚିକ୍କ ମାଟି, ପାଉଁଶ, ଚକ୍ ଖଡ଼ି ଇତ୍ୟାଦି ଅଖାଦ୍ୟ ଖାଇବାକୁ ଭଲପାଏ । ଗୋଡ଼ହାତ ପତଳା ହୋଇ ପେଟ ବାହାରକୁ ବାହାରି ପଡ଼େ । ବେଳେ-ବେଳେ ଛୋଟ ପିଲାଙ୍କୁ ଏହି କୃମି ସକାଶେ ପିତ୍ତହୁଲା ମଧ୍ୟ ମାରେ ।

## ପ୍ରତିଷେଧକ ବ୍ୟବସ୍ଥା :

ସର୍ବଦା ଥଣ୍ଡା ଫୁଟା ପାଣି କିମ୍ବା ନଳକୂପର ପାଣି ପିଇବା ଉଚିତ । ମଞ୍ଜା ପନିପରିବା ଓ ଫଳମୂଳକୁ ଗରମ ପାଣିରେ ଭଲ ଭାବରେ ଧୋଇ ଖାଇବା ଉଚିତ । ବିଲବାଡ଼, ଖୋଲା ପଡ଼ିଆରେ ଏଣେତେଣେ ଝାଡ଼ା ନ ଫେରି ପାଇଖାନାର ବନ୍ଦୋବସ୍ତ କରିବା ସଙ୍ଗେ ସଙ୍ଗେ ବଡ଼ ଗାତ ଖୋଳି ସେଥିରେ ଝାଡ଼ା ଯିବା ଉଚିତ । ଖାଇବା ପୂର୍ବରୁ ହାତକୁ ଭଲ ଭାବରେ ସାବୁନ ଓ ପାଣିଦ୍ୱାରା ଧୋଇବା ବିଧେୟ । ପିଲା କିମ୍ବା ବୟସ୍କ ଲୋକମାନଙ୍କର ଝାଡ଼ା ପରୀକ୍ଷା କରି ଏହି କୃମିର ଡିମ୍ବ ଥିଲେ ଡାକ୍ତରଙ୍କ ପରାମର୍ଶ ଅନୁସାରେ ଔଷଧ ଖାଇବା ଭଲ । ଥରେ ଔଷଧ ଖାଇଲେ କଅା ଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ମରନ୍ତି ନାହିଁ । ତେଣୁ କ୍ରମାଗତ ୨/୩ଥର କିମ୍ବା ୭ ଦିନ ବ୍ୟବଧାନରେ ଥରେ ଲେଖାଏଁ ସ୍ୱାସ୍ଥ୍ୟର ଅବସ୍ଥା ଅନୁ-ଯାୟୀ ଏହି ଔଷଧ ଖାଇଲେ ସୁଫଳ ମିଳିଥାଏ । ଏହି କୃମି ହାତରୁ ରକ୍ଷା ପାଇବାକୁ ହେଲେ ବିଶୁଦ୍ଧ ପାନୀୟ ତଥା ପରିଷ୍କାର ପରିଚ୍ଛନ୍ନତା ପ୍ରତି ବିଶେଷ ଦୃଷ୍ଟି ଦେବା ବିଧେୟ ।

*